# ଅଇନା

ରବି କାନୁନ୍‌ଗୋ



ପ୍ରକାଶକ : ଭାରତ ଭାରତୀ, ସୂତାହାଟ, କଟକ - ୭୫୩ ୦୦୧
ଅକ୍ଷର ସଜ୍ଜା : କୋଣାର୍କ ଡାଟା ପ୍ରୋସେସିଂ, ନୂଆପଲ୍ଲୀ, ଭୁବନେଶ୍ୱର - ୭୫୧ ୦୧୨
ମୁଦ୍ରଣ : ପେଣ୍ଟାକଲ ପ୍ରିଣ୍ଟର୍ସ, ନୂଆପଲ୍ଲୀ, ଭୁବନେଶ୍ୱର - ୭୫୧ ୦୧୨
ପ୍ରଚ୍ଛଦ : ଲଲାଟେନ୍ଦୁ ରଥ
ପ୍ରକାଶ କାଳ : ୧୯୯୮
ମୂଲ୍ୟ : ଷାଠିଏ ଟଙ୍କା

ISBN 81 86550 - 29 -1

ଶ୍ରୀଯୁକ୍ତ ଶ୍ରୀଚରଣ ମହାନ୍ତିଙ୍କୁ ସ୍ନେହ ଉପହାର

ମୋ ବୋଉ ଶ୍ରୀମତୀ ପିଅରମଣି କାନୁନ୍‌ଗୋଙ୍କ ପବିତ୍ର ସ୍ମୃତିରେ-

ରବି

# ନିଜ କଥା

ମୋ ଜୀବନ ଏମିତି ଅସଜଡ଼ା । ତହିଁରେ ବି ଗୋଟିଏ ମୋଡ଼ ଭିତରେ ପଡ଼ିଗଲି । ନ ହେଲେ, ପ୍ରକାଶକ ଶ୍ରୀଯୁକ୍ତ ଉମେଶ ପ୍ରସାଦ ସାହୁ (ପରିଚାଳକ- ଭାରତ ଭାରତୀ)ଙ୍କ ସର୍ବଶେଷ ଯୋଜନା ଅନୁଯାୟୀ ଏହି ସଙ୍କଳନ ଗତ ରାହାସ ପୂର୍ଣ୍ଣିମା ଦିନ ପ୍ରକାଶିତ ହୋଇଥାନ୍ତା । ସେଥିପାଇଁ ସୁଲେଖକ ବନ୍ଧୁ ଶ୍ରୀଯୁକ୍ତ ଗୌରହରି ଦାସ ମୋ ସହିତ ଭୁବନେଶ୍ୱରରୁ ରାଉରକେଲା ସଂଯୋଜନା କରି କରି ହାଲିଆ ହୋଇଗଲେ ପଛେ, ମୁଁ ଏହି ଶେଷ ଲେଖାଟି ପ୍ରକାଶକଙ୍କ ପାଖରେ ପହଞ୍ଚାଇ ପାରିଲି ନାହିଁ । ତୁଣ୍ଡ ଖୋଲିବାର ସାତ ଦିନ ଭିତରେ ନିଜର ସମସ୍ତ ବ୍ୟସ୍ତତା ସତ୍ତ୍ୱେ ଶ୍ରୀଯୁକ୍ତ ଲଲାଟେନ୍ଦୁ ରଥ ସଙ୍କଳନପାଇଁ ପ୍ରଚ୍ଛଦ ଚିତ୍ର ଆଙ୍କି ପହଞ୍ଚାଇ ଦେଲେ । ଏସବୁ ଘଟଣା ଚାରି ପାଞ୍ଚ ମାସ ତଳର । ହେଲା ମୋର । ଦୋଷୀ ମୁଁ ।

୩୧.୧୦.୧୯୯୭ । ବୋଉ ତା' ଗଢ଼ା ପରିପୂର୍ଣ୍ଣ ସଂସାରଟିକୁ ଛାଡ଼ି ପରିଣତ ବୟସରେ ମୋରି ସାମ୍ନାରେ ହିଁ ଚାଲିଗଲା । ସେଦିନ ଥିଲା କାର୍ତ୍ତିକ ଶୁକ୍ଳ ପ୍ରତିପଦ । ଚଉଦ ଦିନ କାଳ ରୀତିନୀତିରେ ବନ୍ଧା ହୋଇ ରହିଲି । ମନ ହଲିଗଲା । ଲେଖି ପାରି ନ ଥିଲି । ଦିନକ ପରେ ରାହାସ ପୂର୍ଣ୍ଣିମା । ଯୋଗ ଘୁଞ୍ଚିଗଲା । ଆଗରୁ ଲେଖିଥିଲେ ହୁଏତ ଆଉ କ'ଣ ଲେଖିଥାନ୍ତି ।

ଯେଉଁ କୁଳ ଏବଂ କାଳରେ ଜନ୍ମ ହୋଇଥିଲି ସେତେବେଳେ ବାପାଙ୍କ ସହିତ ପୁଅମାନେ ଗପସପ କରିବା ପ୍ରାୟ ଅସମ୍ଭବ ଥିଲା । ଏବେ ସନ୍ତାନମାନଙ୍କଠାରୁ 'ହି.....ଡିଅର' ଶୁଣିଲେ ବି ଆମକୁ ଅସଙ୍ଗତ ଲାଗୁ ନାହିଁ । ତିନି ପିଢ଼ିର ମଝିରେ ଠିଆ ହୋଇ ପାରସ୍ପରିକ ଶ୍ରଦ୍ଧା ସତ୍ତ୍ୱେ ଆଚାର ବ୍ୟବହାର ବଦଳି ଯାଉଥିବା କାରଣରୁ ମୁଁ ବିସ୍ମିତ ହୁଏ ନାହିଁ । କିନ୍ତୁ, କେଉଁ କଥା ଆଦୌ ନ ବଦଳୁ ବୋଲି ଆମେ ଆଶା କରୁ ? ଅଥବା, ଅସ୍ମିତାର କେଉଁ ସୂତ୍ରଟି ଆମକୁ ପୂର୍ବପୁରୁଷଙ୍କଠାରୁ ଉତ୍ତର ପୁରୁଷଙ୍କ ପର୍ଯ୍ୟନ୍ତ ଯୋଡ଼ି ରଖେ ?

ଲାଗେ, ସତେ ଯେମିତି ଜୀବନରେ ଅସଂଖ୍ୟ ଦେଢ଼ ଧାଡ଼ିଆ ସତ୍ୟ ରହିଛି ।

ପାରୁଛ ଯଦି, ଅପରପାଇଁ ଟିକେ ସୁଖ ବାଣ୍ଟ; ନିଜ ଦୁଃଖ ସମ୍ଭାଳିବାକୁ ଠାକୁରେ ତୁମ ଭିତରେ ଯଥେଷ୍ଟ ଶକ୍ତି ଦେଇଛନ୍ତି ।

କେହି ଯଦି ଜାଣିବାରେ ତୁମର କିଛି ଉପକାର କରିଥାଏ, ପରବର୍ତ୍ତୀ ସମୟରେ ସମ୍ପର୍କ ଯାହା ହୋଇଯାଉ ପଛେ, ଅନ୍ତତଃ ସେତିକିପାଇଁ ତା' ପାଖରେ ଅକୃତଜ୍ଞ ହେବ ନାହିଁ ।

ଭାଷା ମୋର । ଭାବ ବାପାଙ୍କର । ପିଲାଦିନେ ଏମିତି ଅନେକ କଥା ତାଙ୍କ ତୁଣ୍ଡରୁ ଆଢୁଆଳରେ ଶୁଣିଥିଲି । ସେ ଗୁଡ଼ିକର ସାରବତ୍ତା ହେଜିବି ହେଜିବି ବୋଲି ଯେ ହେଳା କରି ନାହିଁ, ଏ କଥା ବି ଦମ୍ଭରେ ମୁଁ କହିପାରିବିନି । କେବଳ ଗୋଟିଏ ତଥାକଥିତ ସମ୍ଭ୍ରାନ୍ତ ପରିବାରରେ ଜନ୍ମ ହେବା ଛଡ଼ା ଆମ ବାପା ଭୌତିକଭାବେ ଜଣେ ସିଦ୍ଧ ସଂସାରୀ ନ ଥିଲେ । ଜମିଦାରି ଉଚ୍ଛେଦ

ବେଳେ ଏକର ଏକର ଅନାବାଦୀ ଖାସ୍ ହୋଇଗଲା ପଛେ, ସେ ସେଥିରୁ ଡିସ୍‌ମିଲ୍‌ଟିଏ ବି ବେନାମୀ ଭାବେ ସତ୍ତ୍ୱ ଦରଜ କରାଇ ନ ଥିଲେ । ବେଳେବେଳେ ଆମମାନଙ୍କ ମନକଷ୍ଟ ହୋଇଛି । ସିରସ୍ତା ତଦାରଖ କରିବାରେ ସେ ତ ଜଣେ ସିଦ୍ଧହସ୍ତ ଲୋକ ଥିଲେ, ଏତିକି 'ବୁଦ୍ଧି' କାହିଁକି ତାଙ୍କ ମୁଣ୍ଡରେ ପଶିଲାନି ? ପରେ ସଂସାରର ଗତିବିଧି ଦେଖି ଭାବିଛି, ବୁଦ୍ଧି ବୋଲି ତାଙ୍କଠାରୁ ଯାହା ଆଶା କରୁଥିଲୁ, ତାହା ସତରେ ଆଉ କିଛି । ବୁଦ୍ଧି ନୁହେଁ ।

ବୋଉ । ପାଞ୍ଚ ଭଉଣୀ-ଭାଇରୁ ମୁଁ ତା'ର ଶେଷ-ପୂର୍ବ ସନ୍ତାନ, ଜ୍ୟେଷ୍ଠ ପୁତ୍ର । ଜୀବନରେ ସେ ନାନାପ୍ରକାର ଦହଗଞ୍ଜ ସହିଛି । ଶେଷ ପର୍ଯ୍ୟନ୍ତ ସେ ମାୟାଜଡ଼ିତ ହୋଇ ରହିଥିଲା । ଆଦୌ ଦରକାର ନ ଥିଲେ ସୁଦ୍ଧା, କେଉଁ ବାଡ଼ିରୁ କେତେ ନଡ଼ିଆ ପରାହେଲା ବା ସେହିପରି ତୁଚ୍ଛ ବିବରଣୀମାନ ତା' କର୍ତ୍ତୃତ୍ୱମୟ ସୂଚନା ଭିତରେ ରହିବା ଆବଶ୍ୟକ ବୋଲି ସେ ଅନୁଭବ କରୁଥିଲା । ଅବ୍ୟକ୍ତ ତା'ର ଏପରି ଆଚରଣର ସ୍ପଷ୍ଟତମ ବ୍ୟାଖ୍ୟା ବୋଧହୁଏ ଥିଲା- ମୁଁ ମା, ମୋର ସବୁ ଜାଣିବା ଦରକାର । ଅସଲରେ ସେ ଜାଣି ପାରୁ ନ ଥିଲା ଯେ କର୍ତ୍ତୃତ୍ୱ ଜାହିର କରିବାକୁ ବୟସ ଦରକାର । ଫଳସ୍ୱରୂପ, ପରିବାରରେ ସମସ୍ତେ ଆମୋଦିତ ହେଲାପରି, ପାଞ୍ଚରେ ସାତ ମିଶାଇ ସେଥିରୁ ତେର ଫେଡ଼ି ଫେଡ଼ାଣ ଫଳ ତଥାପି ତିନି ଚାରି ଦେଖାଇ ତାକୁ ସନ୍ତୁଷ୍ଟ କରିଦେଉଥିଲେ । ବାପାଙ୍କ ପରି ନୁହେଁ, ବୋଉ ସାଙ୍ଗରେ ଆମମାନଙ୍କର ଗପସପ ଅବାଧ । ତା'ରି ପରି ତା' ଅକ୍ଷର ବି ସୁନ୍ଦର ଥିଲା । ଗୋପୀଭାଷା, ଛାନ୍ଦ, ଚଉପଦୀ ଆଦି ମୁହେଁ ମୁହେଁ ସେ ଗାଇ ଦେଉଥିଲା । ପିଲାବେଳେ ମୋର ଧାରଣା ଥିଲା, ସେ ଯେମିତି ବେଶ ପଣ୍ଡିତଟାଏ । ସେ ମାତ୍ର ତୃତୀୟ ଶ୍ରେଣୀ ପାସ୍ କରିଥିଲା । ନିଜର ଦୁଃଖ ସେ ଯଥାସମ୍ଭବ ଲୁଚାଉଥିଲା । ଅନ୍ୟର ଦୁଃଖ କହିଲାବେଳେ ସେ ଏମିତି ଉଦ୍‌ବେଗ ପ୍ରକାଶ କରୁଥିଲା, ଜଣାପଡୁଥିଲା, ସତେ ଯେମିତି ସେ ନିଜେ ଠିଆ ହୋଇ ଦେଖିଛି । ତା'ର ସାହାଯ୍ୟ କରିବା ସୀମା କେତେ ସେ ଜାଣି ପାରୁ ନ ଥିଲା । ବରଂ ଏହିପରି ଅସହାୟ ଭାବପ୍ରବଣତାଯୋଗୁଁ ସେ ସାଂସାରିକଭାବେ ଅସୁମାରି ଥର ଠକି ଯାଉଥିଲା । ଆଉ ଥରେ କାଳେ ଠକି ହୋଇପାରେ, ସେହିପରି ସମ୍ଭାବନା ଅନୁମାନ କରି ଯଦି କେହି ତାକୁ ହେଜେଇ ଦିଅନ୍ତି, ସେ ନିର୍ବିଘ୍ନରେ କହୁଥିଲା: ଜଣେ କିଏ କ'ଣ କଲା ବୋଲି ଆମେ କ'ଣ ସବୁ ମଣିଷଙ୍କୁ ଅବିଶ୍ୱାସ କରିବା ? ଆମେ ତ ସଂସାରରେ ରହିବା ନା । ବନସ୍ତକୁ ପଳେଇବା କି ? ତା'ର ସେମିତିକା ଆଉ ପଦେ କଥା: ନିଜ ଭଲପାଇଁ ଯେତେ ପାରୁଛି ସବୁ ଚେଷ୍ଟା କର । ଆଉ କାହାର ହାନି ସକାଶେ ଚିନ୍ତା କରନା ।

ବୋଉର ଅବର୍ତ୍ତମାନରେ, ମଣିଷପଣିଆପାଇଁ କେଡ଼େ ସୁନ୍ଦର ଦର୍ଶନଗୁଡ଼ିକ କେଡ଼େ ସହଜରେ ସେ କହି ଦେଉଥିଲା, ଏବେ ମୋର ସେଇ କଥା ହିଁ ମନେ ପଡୁଛି । ପ୍ରଣତିପାଇଁ କାଳେ ଟିକେ ଛୁଇଁ ଦେବି, ଆଉ ତା' ପାଦ ନାହିଁ । ଅଭୟପାଇଁ କାଳେ ଟିକେ ଆଉଜି ପଡ଼ିବି, ଆଉ ତା' କୋଳ ନାହିଁ । ଥାଇ ନ ଥିବା ପରି ମୋ ସ୍ମୃତି ରହିଗଲା ମୋ ପାଖରେ ।

ଏହି ସଙ୍କଳନ ବିଷୟରେ ଦି'ପଦ ।

ଏଥିରେ ଥିବା ଗୋଟିଏ ଗପ 'ଅଇଁଠା ଓ ଅନାବାଦୀ'ର ପ୍ରକାଶନ କାଳ ୧୯୬୭ । ଏହା ପୂର୍ବରୁ ହୁଏତ ଗପ ଲେଖିଥିବି; ମନେ ନାହିଁ । ତେଣୁ ସେ ଦୃଷ୍ଟିରୁ ଏଇଟିକୁ ହିଁ ପ୍ରଥମ ଗପଭାବେ ବିଚାର କରୁଛି । ଲେଖକ ବନ୍ଧୁ ଶ୍ରୀଯୁକ୍ତ ଦେବେନ୍ଦ୍ର ମହାନ୍ତି ନିଜ ଆଗ୍ରହରେ ସଂଗ୍ରହ କରି ମୋତେ ଏଇଟିକୁ ଦେଇଥିଲେ । ମୋ ଲେଖକୀୟ ଇତିହାସରେ ବନ୍ଧୁସୁଲଭ ସହାୟତା କରିଥିବାରୁ ମୁଁ ତାଙ୍କୁ ଧନ୍ୟବାଦ ଜଣାଉଛି ।

ସନ୍ନିବିଷ୍ଟ ଗପଗୁଡ଼ିକ ବିଷୟରେ କିଛି କହିବା ଉଚିତ ହେବ ନାହିଁ । ଚିତ୍ର କରିସାରି ତା' ତଳେ ବାଇଗଣ ବା କୋବି ବୋଲି ଲେଖିବା କେଉଁ ପ୍ରକାର ଯଥାର୍ଥତା ହେବ ଯେ ? ତେବେ, ଏଗୁଡ଼ିକ ବିଭିନ୍ନ ସମୟରେ 'ଆବର୍ତ୍ତ', 'ଇସ୍ତାହାର', 'କଥା', 'ଝଙ୍କାର', 'ସମାରୋହ' (ବର୍ଣ୍ଣାନୁକ୍ରମେ) ଆଦି ପତ୍ରିକାରେ ପ୍ରକାଶିତ ହୋଇଅଛି । ଏହି ଅବକାଶରେ ସମ୍ପାଦକମାନଙ୍କୁ ନିଜର କୃତଜ୍ଞତା ଜ୍ଞାପନ କରୁଅଛି ।

ପାଠକମାନଙ୍କଦ୍ୱାରା ଏହି ସଙ୍କଳନଟି ଆଦୃତ ହେବ ବୋଲି ଠାକୁରଙ୍କୁ ପ୍ରାର୍ଥନା କରୁଛି ।

## ସୂଚୀ

# ଅଇଁଠା ଓ ଅନାବାଦୀ

ବ୍ରିଟିଶ୍ ଅମଳରୁ ଅଇଁଠୁ ଜେନା ମଧୁପଡ଼ା ଗାଁର ଚୌକିଦାର । ବାପଠାରୁ ସେ ଚାର୍ଜ ନେଇଥିଲା । ଆଶାଥିଲା ପୁଅକୁ ଚାର୍ଜ ଦେଇ ସେ ଶାନ୍ତିରେ ନିଶ୍ୱାସ ମାରିବ । କିନ୍ତୁ ଆଶାଟା ତାର ଆଶାରେ ରହିଗଲା । ସରକାର ବାହାଦୁର ଠିକ୍ କଲେ ଏ ଚାକିରି ଆଉ ରଖିବେ ନାହିଁ । ଫଳରେ ସାତ ପୁରୁଷଧରି ଗଡ଼ିଆସିଥିବା ପଦଟା ତା'ରି ପାଖରୁ ଶେଷ ହୋଇଗଲା । ମାସକୁ ଖାଲି ନ' ଟଙ୍କାର ବେତନ ନୁହେଁ, ମୁଣ୍ଡରେ ତାର ସେଇ ବାଇଗଣୀ ରଙ୍ଗର ଟୋପିଟା ଥିଲା ହାତୀ ମୁଣ୍ଡର ମୋତି ପରି । ସେଇଟା ଖସିପଡ଼ିବାରୁ ସେ ଆଜି ସାଧାରଣ ହରିଜନ ବସ୍ତିର ଜଣେ ହରିଜନ ହୋଇଗଲା । ସେ ଆଉ ସରକାରୀ ଚାକିରିଆ ନୁହେଁ । ପରବାନା ତଲବ ସେ ଆଉ କରିପାରିବ ନାହିଁ । ସେ ଆଜି ଖାଲି ଅଇଁଠୁ ଜେନା । ତିନି ଜଣଙ୍କ ପରି ଜଣେ ।

ଦରମା ଟଙ୍କା କେଇଟାକୁ ଛାଡ଼ିଦେଲେ ସମସ୍ତ ଗାଁବାଲାଙ୍କଠୁଁ ସେ ହଳା ଆଦାୟ କରେ । ନ୍ୟାୟ ନିଶାପ ହେଲେ ଗାଁର ନିଶାପୀ ଭଦ୍ରଲୋକଙ୍କ ପାଖରେ ବସେ । ଅବଶ୍ୟ ଅନ୍ୟମାନେ ଚଉପାଢ଼ି ଉପରେ ବସିଲାବେଳେ ତା'ର ସ୍ଥାନ ହୁଏ ଚଉପାଢ଼ି ତଳେ । ସେଥିରେ କିଛି ଯାଏ ଆସେନା । ବସିବା ଜାଗାରୁ ଲୋକର ଓଜନ କଳି ହୁଏନି । ଅସଲ କଥାହେଲା ଅଧିକାର ଓ କ୍ଷମତା । ଛୋଟପାହିଆ ହେଲେ ବି ସେ ସରକାରୀ କର୍ମଚାରୀ । ତା'ଦେହରେ କେହି ହାତ ଟିପା ଦେଲେ ସେ ସରକାରଙ୍କ ପାଖରେ ଦ୍ରୋହୀ ସାବ୍ୟସ୍ତ ହୁଏ । ଏ ସବୁକୁ ବିଚାର କଲେ ତା'ର ଚାକିରିର ମହତ୍ତ୍ୱ ମାସକୁ ନ'ଟଙ୍କା ନୁହେଁ, ଢେର ବେଶୀ ।

ଅଇଁଠୁଜେନା ଭାବୁଥିଲା – ସେ ଏବେ କ'ଣ କରିବ ? ଯିବ କୁଆଡ଼େ ? ଖାଇବ କ'ଣ ? ଥାନାବାବୁ ଅବଶ୍ୟ କହିଛନ୍ତି – ତାକୁ ଚାକିରି ବଦଳରେ ଚାଷ କରିବାପାଇଁ ଜମି ମିଳିବ । ହେଲେ ଜମି କାହିଁ ? ସରକାର କେବେ ଦେବେ କିଏ ଜାଣେ ? ଏ ବର୍ଷ ସେ ହଳା ଆଦାୟ କରିଛି । ବରଷଟା ଯେମିତି ହେଲେ ଶାଗ ମୁଗରେ ଚଳିଯିବ । କିନ୍ତୁ ଏଇ ମାଘମାସରୁ ଆଗିଲା ବର୍ଷପାଇଁ ବନ୍ଦୋବସ୍ତ ନ କଲେ ତା'ଛୁଆ ପିଲା ମରିଯିବେ । ତନ୍ତୀ ହୁଡ଼ିଲେ ଦିନେ । କିନ୍ତୁ ଚାଷୀ ହୁଡ଼ିଲେ ବରଷେ ।

ମଧୁପଡ଼ା ମୌଜାର ତିନି ନମ୍ବର ଖାତା, ଏକଶହ ସତାଅଶି ନମ୍ବର ପ୍ଲଟ । ସମୁଦାୟ ଜମି ଏକ ଏକର ତେର ଡେସ୍‌ମିଲ୍ । ଜମି ଖଣ୍ଡକ ଅନାବାଦୀ, ପଡ଼ିଆ । ଦୁଇ ଚାରିଟା ଖଜୁରି ଗଛ ଓ କେତେଟା କଣ୍ଟାବୁଦା ଛଡ଼ା ଆଉ କିଛି ନାହିଁ । ପାଖ ଆବାଦ ଜମିଠୁ ଦୁଇଫୁଟ ଉଚା । ଅଇଁଠୁଜେନାର ମନ ଲାଗିଛି । ଏଇ ଜମି ଖଣ୍ଡକ ଯଦି ସରକାର ତାକୁ ଦିଅନ୍ତେ, ମାସ ଗୋଟାକରେ ସେ ତାକୁ ଆବାଦ ଜମି ସହିତ ସାମିଲ କରିଦିଅନ୍ତା ।

ଅନାବାଦୀର ଦକ୍ଷିଣ ଓ ପଶ୍ଚିମକୁ ଗୋଚର । ଉତ୍ତରପଟକୁ ଯୋର । ପୂର୍ବ ପଟରେ ଗାଁ ମଧୁପଡ଼ା । ଅଇଁଠୁର ଏ ଜମି କଥା ଖିଆଲ ହେଲାଦିନୁ ଦୁଇ ଚାରିଥର ଯାଇ ଚଉହଦା ବୁଲିଆସିଲାଣି । ପୂର୍ବ ପଟର ଗାଁ ତଳକୁ କିଆବଣଟା ଅନାବାଦୀ କଡ଼େ କଡ଼େ ମାଡ଼ିଯାଇ ପ୍ରାୟ ପାଞ୍ଚ ଗୁଣ୍ଠ ଜମି ଦଖଲ କରିବସିଛି । ସେଗୁଡ଼ାକ ସଫା କରିବାକୁ ହେବ । ପାଣିପାଇଁ ଚିନ୍ତା ନାହିଁ । ଯୋରରୁ କୁମ୍ଭୀଟାଏ ଲଗେଇଦେଲେ ଯେତେ ଇଚ୍ଛା ସେତେ ପାଣି ମିଳିପାରିବ । ଘରେ ଭେଣ୍ଡିଆ ପୁଅ ପହଲା । ବାପ ପୁଅ ଦୁଇ ଜଣ । ମିହନତକୁ ଡର ନାହିଁ ।

ଅଇଁଠୁର ବୟସ ଗଡ଼ିଯାଇଛି । ହେଲେ ମନ ଭିତରେ ଯୁବସୁଲଭ ଉଦ୍ଦାମତା ଆସନ ମାଡ଼ିବସିଛି । ଦୁର୍ବାର ଅଭିଳାଷ ମୁଣ୍ଡଟେକି ଉଠିଛି – ସେ ଚାଷୀ ହେବ । ଆଉ ପାଞ୍ଚଜଣଙ୍କପରି ତା'ର ବି ଧାନ, ବିରି, ମୁଗର ଗଦା ମଡ଼ାଯିବ । ଖରାଦିନେ ଭୋରୁ ଉଠି ସେ ହଳକୁ ଯିବ । ବର୍ଷାଦିନେ ମୁଣ୍ଡରେ ଠେକା ଭିଡ଼ି ଆଣ୍ଠେଇ ପଡ଼ି ବିଲ ବାଛିବ । ଏଟା ଚାଷୀ ଜୀବନର ଗୌରବ । କାଦୁଅ ସହିତ ଗୋଳେଇଘାଣ୍ଟି ହୋଇ କାମ କରିବାରେ ଆନନ୍ଦ । ନୂଆ ସୃଷ୍ଟି କରିବାର ସ୍ଫୂର୍ତ୍ତି, ଫଳ ଫଳେଇବାରେ ସାର୍ଥକତା ସବୁ ଦୁଃଖ କଷ୍ଟକୁ ଘୋଡ଼େଇ ପକାଏ । ଏଇଥିପାଇଁ ପୁଷମାସଟା ଚାଷୀ ପାଖରେ ଏତେ ଗୁରୁତ୍ୱପୂର୍ଣ୍ଣ ।

ମାଘମାସର ଶେଷ ସଂକ୍ରାନ୍ତିକୁ ଅଚାନକ କୁଆଡୁ ଗୋଟାଏ କଳାମେଘ ଉଠେଇଆସି ବହେ ପାଣି ଢାଳି ଦେଇଗଲା । ଶୁଖିଲା ଭୂଇଁ ଜରଜର ହୋଇଉଠିଲା । ତା'ପରଦିନ ସକାଳକୁ ଶୁଖିଲା ଯୋରରେ ଆଣ୍ଠୁଆଣି ପାଣି ଭର୍ତ୍ତି ହୋଇଥାଏ । ନିଗିଡ଼ା ମାଟିରେ ସାଧବବୋହୂଙ୍କ ପଟୁଆର । ମାଟିରୁ କେମିତି ଏକ ଖଟୁଆ ଖଟୁଆ ଗନ୍ଧ ଉଠି ଅଇଁଠୁର ମନଟାକୁ ଓଦା କରିଦେଲା । ମନଭିତରେ ଆଶାର ଅସଂଖ୍ୟ ସାଧବ ବୋହୂ ଏଣେ ତେଣେ ଖେଳିବୁଲିଲେ । ସକାଳୁ ସକାଳୁ ଥରେ ଯାଇ ଅନାବାଦୀ ଜମିର

ଚଉହଦି ସେ ବୁଲିଆସିଲା । ଏଇ ବର୍ଷାରେ ମାଟିଟା ଫୁଲି ଉଠିଛି । ଚୋଟେ ହାଣିଲେ କୋଦାଳଟା ପୂରା ପଶିଯିବ । ଯେ କୌଣସିମତେ ଏ ଜମି ଖଣ୍ଡକୁ ସେ ହାତ କରିବ । ନଚେତ୍ ସେ ଖାଇବ କ'ଣ ?

ସେଦିନ ସନ୍ଧ୍ୟାରେ ତା'ର ସାକ୍ଷାତ ହେଲା ଘନ ପଟ୍ଟନାୟକଙ୍କ ସାଙ୍ଗରେ । ତାଙ୍କୁ ସେ ବାବୁସା'ନ୍ତ ବୋଲି ଡାକେ । ଜମିଦାର ମହାପାତ୍ରଙ୍କର ଇଏ ଥିଲେ ଗୁମାସ୍ତା । ଜୀବନରେ ଅନେକ କିଛି କଲେଣି । ଜମି, ଘରବାଡ଼ି, ଟଙ୍କାପଇସା କାରବାର – ସବୁ ଦିଗରେ ଉନ୍ନତି କରିଛନ୍ତି । ଜମିଦାରି ଥିଲାବେଳେ ଅନେକ ଅନେକ ସଇ ମକଦ୍ଦମାରେ ସେ ତାଙ୍କୁ ସାହାଯ୍ୟ କରିଛି । ମିଛ ମକଦ୍ଦମାରେ ସାକ୍ଷୀ ଦେଇଛି । କେତେ ରାଣ୍ଡୀ ଖଣ୍ଡିଙ୍କ ଜମିକୁ ନିଜ ଜମିରେ ସାମିଲ କଲାବେଳେ ଚ଼ଉକିଦାରୀ ଠେଙ୍ଗା ଧରି ସେ ପଟ୍ଟନାୟକଙ୍କ ପାଖରେ ଠିଆହୋଇଛି । ସେଇ ଖାତିରରେ ସେ ବାବୁ ସାଆନ୍ତ ।

ଏବେ ଜମିଦାରି ଗଲାପରେ ଘନ ପଟ୍ଟନାୟକ ଅଛନ୍ତି, ସେଇ ପୁରୁଣା ତଉଜିର ତହସିଲଦାର । ଅଇଁଠୁ ଭାବିଲା, ବାବୁ ସାଆନ୍ତଙ୍କୁ କଥାଟା କହି ପରାମର୍ଶ ନେବ ।

ସଞ୍ଜ ପହରଟାରେ ବାବୁସାଆନ୍ତେ ବାହାର ବାରଣ୍ଡାରେ ଆରାମ ଚେୟାର ପକେଇ ଢ଼ୋଳାଉଥାଆନ୍ତି । ଲମ୍ବ ଠେଙ୍ଗାଟାକୁ ତଳେ ରଖିଦେଇ ଅଇଁଠୁ ଓଳଗିଟାଏ ହେଲା । ବାବୁ ସାଆନ୍ତେ କୁଶଳ ପ୍ରଶ୍ନ କଲେ । ଅଇଁଠୁ କହିଲା – ''ଆଉ ଭଲ କ'ଣ ପଚାରୁଚନ୍ତି ବାବୁ ସାଆନ୍ତେ ? ଚାକିରି ଗଲା ନାହିଁ ଯେ ପାଟିରୁ ଆହାର ଛଡ଼ାଇ ନେଲେ ।''

''ଆହା ଏ କଥା ତୁ ଆଉ କହନା । ବୁଝିଲୁ ଅଇଁଠୁ – ତୋ ଚାକିରିଟା ଥିଲା ବ୍ରିଟିଶ ଅମଲାତାନ୍ତ୍ରିକ ଶାସନର ଏକ ନିଦର୍ଶନ । ଆମର ହେଲା ଜନମଙ୍ଗଳ ରାଷ୍ଟ୍ର । ଏଥିରେ ତୋର କିଛି କ୍ଷତି ହେବନି । ଚାକିରି ବଦଳରେ ତୋର ଥଇଥାନର ବ୍ୟବସ୍ଥା ସରକାର ଅବଶ୍ୟ କରିବେ ।''

''କେବେ ସିନା କରିବେ ଆଜ୍ଞା, ଅବିକା ମୁଁ ତ ମଲି । ମୋତେ କିଛି ବୁଦ୍ଧିବାଟ ଦେଖାନ୍ତୁ ବାବୁସାଆନ୍ତେ ।''

''ବୁଦ୍ଧି ଆଉ କ'ଣ ଦେବି ? ତୋ କଥାତ ଲେଖା ହୋଇଛି ଉପରକୁ । କେତେ ଜମି ଦିଆଯିବ, କି ଧରଣର ଜମି ଦିଆଯିବ ଜାଣିଲେ ଯାଇଁ ତା'ର ବନ୍ଦୋବସ୍ତ ହେବ ।''

''ମୁଁ କ'ଣ କହୁଥିଲିକି, ବାବୁସାଆନ୍ତେ – ଆମ ଗାଁ ତଳର ସେ ଯେଉଁ ଅନବାଦୀଟା ପଡ଼ିଛି, ସେଇଟାକୁ ମୋତେ କେମିତି ହେଲେ କରେଇଦିଅନ୍ତୁ ।''

ଘନ ପଟ୍ଟନାୟକ ଜିଜ୍ଞାସୁ ଦୃଷ୍ଟିରେ ଚାହିଁଲେ ଅଇଁଠୁଆଡ଼କୁ । ସତେ ଯେମିତି କେହି ତାଙ୍କର ବିଶି ଆଙ୍ଗୁଠିକୁ ମୁଠାଇ ଧଇଲା । ତା'ପରେ ଆତ୍ମସ୍ଥ ହୋଇ ମୁହଁରେ ସରସତା ଫୁଟାଇ କହିଲେ, ''ସେ ଖଣ୍ଡକ ସରକାର ଦେବେ କି ନା ଜାଣେନା । ତେବେ ପଡ଼ିଆ ପଡ଼ିଛି ଯେତେବେଳେ, ତୁ ତାକୁ ବର୍ଷେ ଦି ବର୍ଷ ଚାଷ କର । ଦେଖାଯାଉ କ'ଣ ହେଉଛି । ଚେଷ୍ଟା କରିବା ସେ ଖଣ୍ଡକ ତୋ ନାଁରେ କରାଇ ଦେବାକୁ । ସରକାରଙ୍କ ହୁକୁମ ଆସିବାକୁ ଟିକିଏ ଡେରି ହେବ । ତୁ ତ ସବୁ ଜାଣୁ । ମୁଁ ଆଉ ବେଶୀ କ'ଣ କହିବି ? କେତେ ଉପରକୁ କାଗଜ ପତ୍ର ଯିବ । ପୁଣି ଫେରିବ କେତେ ହାତ ଦେଇ । କିଏ ଜାଣେ ଜମି ମିଳିବାକୁ କେତେ ଡେରି ହେଉଛି ?

''କିନ୍ତୁ ବାବୁସାଆନ୍ତେ ! ସେ ପଡ଼ିଆଟାକୁ ଉଠିଆ କରିସାରିବା ପରେ ଯଦି ମୋ ନାଁରେ ନ ହୁଏ, ତେବେ ଏତେ ପରିଶ୍ରମ ଅକାରଣରେ ଯିବ ।''

''ଓହୋଃ ! କାରଣ ଅକାରଣ ବୋଲି କିଛି ଅଛି ଏ ଦୁନିଆରେ ? ଭାବିଲେ ସବୁ କିଛି ଅକାରଣ ପୁଣି ଭାବିଲେ କାରଣ ଅଛି । ଧରିନେ, ତୁ ସେ ଜମିକୁ ସାବାଡ଼ କରି ଦୁଇ ତିନି ଫସଲ କାଟିଲୁ, ସେଥିପାଇଁ ତୋଠୁ ତ କେହି ଖଜଣା ନେଉନି କି ଭାଗ ନେଉନି । ମାଗଣାରେ ସବୁନେଇ ଘରେ ପୂରେଇବୁ । ଯଦି ସେ ଜମି ତୋର ହେଲା ତ ଖୁବ୍ ଭଲ । ଆଉ ଯଦିବା ନ ହେଲା ତେବେ ଦୁଃଖ କରିବାର ବି କିଛି ନାହିଁ !''

କଥାଟା ଅଇଁଠୁ ମନକୁ ପାଇଲା । ତା'ପରିଶ୍ରମର ମୂଲ୍ୟ କିଛି ନାହିଁ । ଯାହାଙ୍କର ସମ୍ବଳ ଅଛି କି ଗୋଟାକୁ ଦି'ଟା ପେଷା ଅଛି ସେମାନେ ସିନା ଓଜନ କରି ଦେଖିବେ, ଏଥିରେ ଲାଭ କି ସେଥିରେ ଲାଭ ! ଯାହାର ଏ ପଟରୁ ନାହିଁକି ସେପଟରୁ ନାହିଁ, ତାକୁ ମୂଲେଇବାପାଇଁ ରହୁଛି କେଉଁଠି ? ଏଇ ଧ-ଧ-କୁ ପାଣି ଅଣା ପାଇଁତ ଏତେ କଥା । ମହାଜନ ଟଙ୍କାକୁ ଚାରି ଅଣା ସୁଧ କହିଲେ ହଁ । ଛ'ଅଣା କହିଲେ ବି ହଁ । ଟିକିଏ ଦମ୍ ନେଇ କହିଲା – ''ମତେ ଟିକିଏ ତା'ହେଲେ ବାବୁସାଆନ୍ତେ ସହାୟ ହୁଅନ୍ତୁ । ମୁଁ ସେ ଖଣ୍ଡକୁ ଆବାଦ କରେ । ଆପଣଙ୍କମିତି ଲୋକ ପାଖରେ ଠିଆ ନ ହେଲେ କିଏ କ'ଣ କହିବ ଅବା ।''

ପଟ୍ଟନାୟକ ହସି ହସି କହିଲେ, ''ଆରେ ତତେ ସାହାଯ୍ୟ ନ କରିବି ତ କରିବି କାହାକୁ ? ତୋ'ପରି ଉପକାରୀ ଲୋକଙ୍କର ଉପକାର ନ ମାନିଲେ ନର୍କରେ ପଡ଼ିବାକୁ ହବ । ବୁଝିଲୁ ? ଖାଲି ନର୍କରେ ଘାଣ୍ଟି ଗୋଳେଇ ହେବା କଥା । ଶୁଭସ୍ୟ ଶୀଘ୍ରଂ । ବର୍ଷା ହେଇଯାଇଛି । ଯୋଗଟା ଖୁବ୍ ଭଲ । ତୁ କାଲିଠୁ କାମରେ ଲାଗିଯା । କୋଡ଼ି କୋଦାଳ ସିଇରା ଯାହା ସବୁ ଦରକାର ସବୁ ଆମ ଘରୁ ନେଇଯିବୁ । ହଁ ଆମ ମୂଲିଆଟା ଖାଲି ଖାଲି ଘରଟାରେ ବସିଛି । ହାତରେ କିଛି ବୋଲି କିଛି ପାଇଟିପତ୍ର ନାହିଁ । ତାକୁ ମୁଁ କହିଦେବି, ତତେ ସେ ସାହାଯ୍ୟ କରିବ । ତୁ ବରଂ ଗୋଟେ କାମ କରିବୁ । ବଛା ବଛିବେଳକୁ ତୋ ପୁଅକୁ ଘଡ଼ିଏ ଘଡ଼ିଏ ପଠେଇବୁ । ମତେ ଟିକିଏ ସାହାଯ୍ୟ କରିବାପାଇଁ । ତୁ ତ ଜାଣିଥିବୁ । ମୁଁ ଘରକୁ ଏକଲାଟା ହୋଇ ବଡ଼ ହଇରାଣ ହେଉଛି । ସହଜେ ତ ସରକାରୀ ଚାକିରି । ପର ଘରେ ମୁଣ୍ଡ ବିକିଥିବା କଥା । ଏଥିରେ ମୋର ବହୁତ କ୍ଷତି ହେଉଛି । ହଁ, କେହି ଯଦି ପଚାରେ ପଡ଼ିଆଟାକୁ କାହିଁକି ଟାଡୁଛ ବୋଲି, କହିବୁ, ଟାଡ଼ିବାପାଇଁ ମୁଁ କହିଛି ।''

ଅଇଁଠୁ ଉଠି ଠିଆହେଲା । ଆନନ୍ଦରେ ସେ ଆତ୍ମହରା ହୋଇପଡ଼ିଥିଲା । ଭୂ-ସମ୍ପତ୍ତି ବୋଲି, ଘରର ପାଣିଚାର ବାଦେ ଟିପେ ହେଲେ ଜାଗା ଆଉ ନାହିଁ । ବ୍ରିଟିଶ୍ ଅମଳର ଗୋଲାମ, ସ୍ୱାଧୀନ ଭାରତର ଚୌକିଦାର, ଏବେ ଚାଷୀ ବନିବ । ଏଟା କମ୍ ଗୌରବର କଥା ନୁହେଁ ।

ତା'ପରଦିନ ସକାଳୁ ଉଠି ଅଇଁଠୁ ଆଉ ତା'ପୁଅ ଦୁହେଁ କାମରେ ଲାଗିଗଲେ । କିଆବଣ ସଫା ହେଲା । ଅନାବାଦୀ ଆବାଦ ହେଲା । ଗାଁ ଲୋକେ କହିଲେ – ''ଅଇଁଠୁ ! ଦଣ୍ଡା, ଭଲ କଥା ନୁହେଁ ।'' ଅଇଁଠୁ ବୁଝିଲା, ଗାଁ ଲୋକେ ଯାହା କହୁଛନ୍ତି ସେଟା ଠିକ୍ । ହେଲେ ସେ ଆଗ ଯୁଗ ଆଉ ନାହିଁ । କେତେ ବଦଳି ଯାଉଛି । ତା'ର ଯେତେବେଳ ଚାକିରି ଗଲା, ତାକୁ ଅନ୍ୟ ବ୍ୟବସ୍ଥା କରିବାକୁ ପଡ଼ିବ ନିଶ୍ଚୟ । ଦଣ୍ଡା ନ ଟାଡ଼ିଲେ, ତାକୁ ଜମି ମିଳିବ କେଉଁଠୁ ? କାହାର ଆବାଦ ଜମି ଏବେ ଥୁଆ ହୋଇଛି ଯେ ତାକୁ ଲଗାଣ କରିଦେବ ? ଅଇଁଠୁ ନିଜ କାମରେ ମନଦିଏ ।

କେଇଟା ଦିନରେ ଜମି ପୁଳାକ ଆବାଦ ହୋଇଗଲା । ହଳ ବଳଦ ବି ଅଭାବ ହେଲାନି । ପଟ୍ଟନାୟକ ଯାଚିକି ଦେବା ଲୋକ । କହିଲେ – ଅଇଁଠୁ, ବର୍ତ୍ତମାନ ମୋ ମୂଲିଆଟା ଘରେ ବେକାର ହୋଇବସିଛି । ତୁ କିଛି ଭାବେନା । ସେ ହଳ ଦି ଭେଡ଼ା

ବୁଲେଇ ଦେଉ । ମୋର ଯେତେବେଳେ ଲୋକ ଦରକାର ହେବେ ତୋଠୁ ସାହାଯ୍ୟ ନେବି । ତୁ ଗୋଟାଏ ଚାଷୀ ହେବାକୁ ଯାଉଛୁ ଯେତେବେଳେ, ତୋ ସହିତ ସହଯୋଗ ନ ରଖିଲେ ଚଳିବ କିମିତି ?

ଅଇଁଠୁ ବାବୁସାଆନ୍ତଙ୍କର ଅଯାଚିତ କୃପା ଦେଖି ମୁଗ୍ଧ ଚକିତ ହୋଇଯାଉଥିଲା । ମନେ ମନେ କହିଲା – ଦେବତା ପରି ଲୋକଟାଏ ଏକା । ୟାଙ୍କର ପୁଣି ଲୋକେ ନିନ୍ଦା କରନ୍ତି ! ହଁ, ନ କରିବେ କାହିଁକି ? ଏଟା ହେଲା କଳିଯୁଗ । ଏ ଯୁଗରେ କଞ୍ଚା ଗୋବରରେ ବି ଅଁଶେଇ ପଡ଼ିଛି ।

ବାପପୁଅଙ୍କର ଶ୍ରମ ଆଉ ଭଲ ପାଳକ ଯୋଗୁ ଅନାବାଦୀ ଜମିରେ ସୁନାର ଲହଡ଼ି ଭାଙ୍ଗୁଛି । ଧାନଗଛଗୁଡ଼ାକ ଭାର ସହି ନ ପାରି ନଇଁ ପଡ଼ିଲେଣି । ପାଖ କିଆରି ଆଉ ଏ କିଆରି ଖଣ୍ଡେ ବାଟରୁ ବାରି ହୋଇପଡୁଛି । ଅଇଁଠୁ ମନେ ମନେ ଚିନ୍ତା କଲା – ଏ ସନ ପହଲାକୁ ବାହାକରେଇଦବ । ଟୋକାଟା ଏବେ ଟିକିଏ ଫୁଲାଫାଙ୍କିଆ ଜଣାପଡୁଛି । ଘରଟାକୁ ବି ଟିର୍ଲାପିଲା ଦରକାର । ଦୁନିଆଟା ଅଇଁଠୁକୁ ଛପଛପିଆ ଦେଖାଗଲା । ଆଖିରେ ତା'ର ଆଖିଏ ଲୁହ । ମନରେ ଅତୀତର ଅସରନ୍ତି ଭାବନା, ବିଚାରୀ ! ତଦସ୍ତାସନ ବାହୁଡ଼ା ଦିନୁଟାରେ ବୁଢ଼ୀ କାଳମୁହଁରେ ଗଲା । ହତଭାଗିନୀଟା ।

ଅଇଁଠୁ ଜୀବନରେ ଚାଷୀ ହେବା ଦିନଠୁ ବର୍ଷଟିଏ ପୂରିଯାଇଛି । ଜମି ପୂଳାକରୁ ଏହା ଭିତରେ ଦୁଇଟି ଫସଲ ସେ ଉଠେଇଛି । ଘନ ପଟ୍ଟନାୟକଙ୍କୁ ଏହା ଭିତରେ ଅନେକଥର ସେ ଓଳଗି ହେଲାଣି । ମୋ କଥା ଭୁଲିବେ ନାହିଁ ବୋଲି କହି ତାଙ୍କୁ ସବୁବେଳେ ମନେ ପକାଇଦେଉଛି । ଅନାବାଦୀ ଖଣ୍ଡକ ତା'ର ହୁଏ ଯେମିତି । ଦିନ ଗଡ଼ିଚାଲିଛି । ପୁଣି ଆସିଛି ମାଘ ମାସ । ଆଉ ଗୋଟିଏ ଫସଲପାଇଁ ଜମିକୁ ସଜାଡ଼ିବାର ବେଳ ।

ଅଇଁଠୁ ଜେନା ପାଖକୁ ଅଞ୍ଚଳ ଅଫିସରୁ ଖବର ଆସିଲା – ଶୀଘ୍ର ଆସି ଦେଖାକର । ମଇଳା ଗାମୁଛାଟାକୁ ମୁଣ୍ଡରେ ବାନ୍ଧି, ଚୌକିଦାରୀ ଅମଳର ପୁରୁଣା ବାଇଗଣୀ ରଙ୍ଗର ଫତେଇଟାକୁ ଦେହରେ ଗଳେଇ ଅଇଁଠୁ ଯାଇ ଠିଆହେଲା ଅଞ୍ଚଳ ଅଫିସ୍ ଆଗରେ ।

ଅଞ୍ଚଳ ଅଫିସ୍‌ର କିରାଣି ଖଣ୍ଡେ କାଗଜ ବଢ଼ାଇଦେଇ କହିଲେ – ଅଇଁଠୁ ଜେନା, ତମୁକୁ ଜମି ମିଳିଗଲା । ତମରି ଗାଁର ୬୪୧ ରୁ ୬୪୫ ନମ୍ବର ପ୍ଲଟ ଜମି

ଆଜିଠୁ ତମର ହେଲା । ଗାଏ ମୋଟ ଏକ ଏକର ଦଶ ଡେସିମିଲ୍ ଜମିକୁ ଖଜଣା ହେଲା ବର୍ଷକୁ ମାତ୍ର ଦଶ ଟଙ୍କା ଦଶ ପଇସା ।

ଅଇଁଠୁ ଆଶ୍ଚର୍ଯ୍ୟହୋଇ ଚାହିଁଲା ପଛ ପଟରେ ବସିଥିବା ବୁଢ଼ା ଅମିନଆଡ଼େ । ଖଣ୍ଡେ ବୋଲି ତ ଜମି । ପାଞ୍ଚ ଖଣ୍ଡ ହେଲା କେମିତି ? ମନକଥା ବୁଝିପାରି ବୁଢ଼ା ଡାକିଲା ପାଖକୁ – ଦେଖିବା ଦେଲ ? କେଉଁ ଜମି ତମକୁ ମିଳିଲା ? ଅଇଁଠୁ ବଢ଼ାଇ ଦେଲା କାଗଜ ଖଣ୍ଡିକ ।

ପ୍ରଚଖୁ ଲଗେଇ ବୁଢ଼ା ନିରିଖେଇ ଦେଖିଲା ସେ ପଟାଖଣ୍ଡିକୁ । ତା'ପରେ ଟିକିଏ ହସି କହିଲା, ''ଭଲ ଜମି ପୁଳାଏ ପାଇଲ ହେ ଜେନାଏ !''

ଅଇଁଠୁ ଝାଉଁଳି ପଡ଼ି କହିଲା, ''ସେଇ ଅନାବାଦୀ ପୁଳାକ କଥା କହୁଛନ୍ତି ନା ବାବୁ ।''

''ହଁ-ହଁ ଅନାବାଦୀ ପୁଳାକ । କିନ୍ତୁ ସେଠି ତୁମେ କ'ଣ କରିବ ? ଘାଇ ମୁହଁ ବାଲିଚରଟା ।''

''ବାଲିଚର ? କ'ଣ କହୁଛନ୍ତି ଆପଣ ? ସେଠି ଅନାବାଦୀ ଜମି ଆସିଲା କୁଆଡୁ ? ମୋ ଦିହକଯାକତ ଦେଖି ଆସିଲି – ସେଠି ଅନାବାଦୀ ଗୋଚର ବୋଲି କିଛି ନାହିଁ !''

''ଦୂର୍ । ତମେ ଜାଣିନ !''

''ଆଚ୍ଛା, ଦେଖିଲେ ଆଜ୍ଞା, ଆମ ଗାଁ ତଳ ଅନାବାଦୀ ପୁଳାକ କେଉଁଠି ଅଛି ?''

''ଗାଁ ତଳେ ଅନାବାଦୀ ଫନାବାଦୀ କିଛି ନାହିଁ । ଯାହା ଅଛି ସବୁ ସେଇ ଘାଇ ମୁହଁ ପାଖରେ । ପୁରୁଣା ରେକର୍ଡରେ ଥିଲା । ରିଭିଜନ ବନ୍ଦୋବସ୍ତରେ ଘନ ବାବୁ ସେଟାକୁ ବଦଳେଇଦେଇଛନ୍ତି ।''

ଅଇଁଠୁ ଫେରିଲା ଗାଁକୁ । ନୁଆଁଣିଆ ଖରା ତାତିରେ ମୁଣ୍ଡଟା ତାର ଝାଇଁ ମାରି ଯାଉଥିଲା । ସେଇ ତାତି ଆଉ କ୍ଳାନ୍ତିକୁ ଆଗକୁ ଠେଲି ସେ ଚାଲୁଥିଲା । ମନେ ମନେ ଭାବୁଥିଲା – ବାବୁସାଆନ୍ତଙ୍କୁ ପଚାରିବ, ଅନାବାଦୀ ଜମିଟା ଚାଲି ଚାଲି ଏତେ ବାଟ ଗଲା କେମିତି ?



# ଧର୍ମ ଫସଲ

**ଇ**ସ୍‌ଲାମ୍ ବା ପୟଗମ୍ବରମାନଙ୍କ ସମ୍ବନ୍ଧରେ ନିଜ ମନରେ କିଞ୍ଚିତ୍ ପବିତ୍ର ଧାରଣା ଯଦି ସୃଷ୍ଟି ହୋଇଥାଏ, ତାହା ମୁଁ ରଫିକ୍‌ଚାଚାଙ୍କୁ ଚିହ୍ନିଥିବାର ସୌଭାଗ୍ୟ ଯୋଗୁ । ଅନେକ ବର୍ଷ ତଳର କଥା । ନାଁ ସହିତ ବିଶେଷଣ ନ ଯୋଡ଼ିଲେ ସହରରେ ଠିଆ ହୋଇଥିବା ମଣିଷଟା ବି ହଜିଯାଏ । ଗାଁରେ ଏ ବିପତ୍ତି ମୋଟୁରୁ ନ ଥିଲା । ସେତେବେଳକୁ ମୁଁ ଛୁଆ ଓ ରଫିକ୍‌ବାବା ଦରବୁଢ଼ା ଲୋକ ।

ଆମ ମେଲଣ ପଡ଼ିଆର ଠିକ୍ ଚଉଛକି ଉପରେ ଗୋଟିଏ ପୁରୁଣା କଦମ୍ବ ଗଛ । ଲୋକେ କହନ୍ତି, ତାକୁ କୁଆଡ଼େ ଖୋଦ୍ ଅଚ୍ୟୁତାନନ୍ଦ ମାହାପୁରୁ ଲଗେଇଥିଲେ । କେତେକ ଯୁବତୀ ପତଳା ଡେନିମ୍ ଭିତରୁ ଜାନୁଯଉବନ ଦେଖେଇ ନିଜ ରୂପ ସପକ୍ଷରେ ପ୍ରଶଂସା ଶୁଣିବାକୁ ଦହଡ଼ ଆଖିରେ ଅନାଉଥିବାପରି ଏଇ ଝଙ୍କା ଗଛଟି ନିଜ ଶିଅ-ମୂଳ ସବୁ ପଦାକୁ ବାହାରକରି ପ୍ରାଚୀନତା ଦେଖେଇହୁଏ । ଗଛ ନିଶ୍ଚୟ ପୁରୁଣା । ହେଲେ ଲୋକଙ୍କ କଥା ବିଶ୍ୱାସ ହେଉ ନାହିଁ । କାରଣ ଅଚ୍ୟୁତାନନ୍ଦ ମାହାପୁରୁଙ୍କ ଐତିହାସିକ ଭାବେ ନିରୂପିତ ହୋଇଥିବା କାଳର ବହୁପରେ ଡିଷ୍ଟ୍ରିକ୍ଟ ବୋର୍ଡ଼ ଏବଂ ଲୋକାଲ୍ ବୋର୍ଡ଼ ରାସ୍ତା ତିଆରି ହୋଇଥିବ । ତା'ପୂର୍ବରୁ ସମଗ୍ର ଅଞ୍ଚଳ ଜଙ୍ଗଲ ଥିବ ନିଶ୍ଚୟ । ଜଙ୍ଗଲରେ ସେ କିଆଁ ଗଛଟାଏ ପୋତୁଥିଲେ ? ମଣିଷର ଅବଚେତନ ମନରେ ପ୍ରାଚୀନତାର ଟିକେ ଓଜନ ଥାଏ ବୋଧେ ।

ସେଇ କଦମ୍ବ ଗଛ ସହିତ ଗୋପୀନାଥଙ୍କ ସଂପର୍କ ଲୋକାଲ୍ ପୁରାଣ, କଥା, କାହାଣୀରୁ ଯେତେ ଶୁଣିଥିଲେ ମଧ୍ୟ ବା ସମସ୍ତଙ୍କ ଅପ୍ରତିହତ ବିଶ୍ୱାସ ସତ୍ତ୍ୱେ ପିଲାମନ ନେଇ ମୁଁ ପ୍ରତ୍ୟକ୍ଷ କରିବାରେ ରଫିକ୍‌ଚାଚା ଏବଂ ସେଇ କଦମ୍ବ ଗଛ ମୋତେ ଅଭିନ୍ନ ଲାଗନ୍ତି । ଏଇ ଗପ ଲେଖିଲାବେଳକୁ ମୋର ଧାରଣା ହେଉଛି, ସେ ଯଦି ମୁସଲମାନ ହୋଇ ନ ଥାନ୍ତେ ବା କାଳର କଳ ବାଟେ ସଂଶୋଧିତ ସଂସ୍କରଣର ହିନ୍ଦୁତ୍ୱ ଯଦି ମୋତେ ଗ୍ରାସ କରି ନ ଥାନ୍ତା, ତାହେଲେ ମୁଁ ଦମ୍ଭର ସହ କହିପାରିଥା'ନ୍ତି, ସେ ଥିଲେ କୃଷ୍ଣ-କଳାର ଅଧିକାରୀ ।

ଗୋଟିଏ ସ୍ୱତନ୍ତ୍ର ଆବଶ୍ୟକତାଯୋଗୁ ମୁଁ ତାଙ୍କୁ ପ୍ରତିଦିନ ଦେଖୁଥାଏ । ଅଲଗା ପ୍ରକାର ହେଉ ପଛେ, ଆମ ପିଲାଦିନେ ବି ଟିଉସନ୍ ଥିଲା । ପିଲା ଇଚ୍ଛା କଲେ ସାର୍‌ଙ୍କୁ ପାଉ ନ ଥିଲା । ସାର୍ ଡାକି କହିବେ, ତୁ ଆସିବୁ, ମୁଁ ତୋତେ ଅମୁକ ବିଷୟ ପଢ଼ାଇବି । ମୁଁ ପଢୁଥିଲି ବିଶୁ ସାର୍‌ଙ୍କ ପାଖରେ । ସେ ଆମ ଗାଁରେ ରହୁ ନ ଥିଲେ । ତେଣୁ ମୋତେ ମେଲଣପଡ଼ିଆ ଚଉଛକି ବାଟଦେଇ ଯିବାକୁ ପଡୁଥିଲା । ବିଶୁ ସାର୍ ମୋଟେ ରାଗୀ ନୁହଁନ୍ତି । ପାଠ ମାମଲାରେ ସେ କିନ୍ତୁ ଦୁର୍ବାସାଙ୍କ ପରି ଜଟା ଛିଣ୍ଡେଇଲା ଭଳିଆ ରାଗି ଯାଉଥିଲେ । ପିଲାଦିନେ ମୁଁ କୁଆଡ଼େ ପ୍ରଚଣ୍ଡ ଅଳସୁଆ ଥିଲି । ଆଜି ଯେ କର୍ମଠ ହୋଇଯାଇଛି, ଏପରି ପ୍ରଶଂସା କେତେକ କରୁଥିଲେ ମଧ୍ୟ ମୁଁ ତାହା ବିଶ୍ୱାସ କରିବାକୁ ରାଜି ନୁହେଁ । ମଞ୍ଜି କଥାଟି ଜାଣେ । ସେତେବେଳେ ଠକିବା ଶିଖି ନ ଥିଲି ତ ତେଣୁ ଧରା ପଡ଼ିଯାଉଥିଲି ।

ସବୁଦିନେ ରଫିକ୍‌ଚାଚାଙ୍କୁ ଦେଖେ କଦମ୍ବ ଗଛ ମୂଳେ । ତାଙ୍କ ଘର ଆମ ଗାଁରେ ନୁହେଁ । କଦମ୍ବ ଗଛ ଆମ ଗାଁ ଶେଷମୁଣ୍ଡ ମେଲଣ ପଡ଼ିଆରେ । ତାଙ୍କ ଘର ନିକଟରେ ଟିଉସନ୍‌ରୁ ଫେରିବା ବେଳକୁ ନ ଥା'ନ୍ତି ସେ । ସେଠି ବସିଥିବାବେଳେ ସେ କାହାରି ସହିତ ଖୁସୀ ଗପ ହେବା ମୁଁ ଥରଯିଏ ବି ଦେଖି ନାହିଁ ।

ଆମ ସିନିୟର ସାଙ୍ଗ ବାଆଜୀ ବେଳ ହ୍ୟାପ ଗୋଟାଏ ମନସ୍ତତ୍ତ୍ୱବିଦ୍ ପରି କହୁଥିଲା, ବୁଢ଼ା କୁଆଡ଼େ ପ୍ରେମ କରୁଥିଲା । ସେତେବେଳେ ଭାବି ହେଉ ନ ଥିଲା, ପ୍ରେମ କେମିତିକା ଚିଜ ବା ବୁଢ଼ାମାନଙ୍କର ବି ଅତୀତ ଥାଏ ବା ଆମର ଦିନେ ଭବିଷ୍ୟତ ଆସିପାରେ । କେଉଁ ଆଗ୍ନେୟଗିରି କାହିଁ କେତେ ଲାଭା ନିଷ୍କାସନ କରିପାରିବ ବା କେଉଁ ବନାନୀକୁ କେଉଁ କାଞ୍ଚନର ନିଆଁ କାହିଁକି କେତେ ଦହିବ – ଏତେ ଅକଲ କ'ଣ ଥିଲା କି ? ତମ୍ପା ବାଆଜୀ କହୁଥିଲା, ଶେଖ୍ ହଜ୍‌ମତ୍ ଅଲ୍ଲୀଙ୍କ ଝିଅ କୁଆଡ଼େ ସେଇଠି ଦଉଡ଼ିଦେଇ ମରିଥିଲା । ସେଇଥିପାଇଁ ରଫିକ୍‌ବୁଢ଼ା ସେଠାକୁ ସବୁଦିନେ ଆସେ । ପ୍ରେମ କ'ଣ ମଣିଷକୁ ଏତେ ଦହଗଞ୍ଜ କରେ ? ପ୍ରେମ କ'ଣ ଜୀବନର ପରିସୀମାକୁ ଅତିକ୍ରମ କରିପାରେ ? ଯେ ଶ... ବାଆଜୀ କଥା ଯଦି ସତ ହୋଇଥାଏ, ଏ ସଂକ୍ରମଣରୁ ମଣିଷ ବଞ୍ଚିବ କେମିତି ?

ସେଇ କଦମ୍ବ ଗଛର ଆଖପାଖରେ ଅନେକ ମରିଛନ୍ତି । କେହି ଆଶ୍ଚର୍ଯ୍ୟ ହୁଅନ୍ତି ନାହିଁ । ମୁଁ ଶୁଣିଚି, ଚାରୁ ଧୋବାଣୀ ଦଉଡ଼ିଦେଇ ମରିଥିଲା । ଓଥରା ନଟ ପଧାନ ଗୁଡ଼ କନିଅର ମଞ୍ଜିଖାଇ ସେଇଠି ମରିପଡ଼ିଥିଲା । ଦାସଘର ବୋହୂ ପାପଗର୍ଭ

ପାଇଁ ସପେଇ ଯୋଗାଡ଼ କରି ନ ପାରି ଗେରସ୍ତ ପଠେଇଥିବା କଲିକତୀ ବିଷ ଖାଇ ସେଇଠି ମଲା । ରାଧୁ ମାହାଳି ନାତୁଣୀ ଦଉଡ଼ି ଦେଇଥିଲା ସେଇ ଗଛରେ । ଲୋକେ ନାନା କଥା କହିଲେ । ଦଫାଦାର କହ୍ନେଇ ମହାନ୍ତିଙ୍କ ଝିଅ ବିଷୟରେ ଅନେକ ଅସଙ୍ଗତ କାହାଣୀମାନ ଶୁଣାଯିବା ପରେ ଦିନେ ଦେଖାଗଲା, ସେ ସେଇଠି ମରିପଡ଼ିଛି । ପାଟିରୁ ଫେଣ ବାହାରିଥାଏ । ଲୋକେ କହିଲେ, ତାକୁ କୁଆଡ଼େ ମଶାଣିଚଣ୍ଡୀ ଖାଇଲା ।

ଏସବୁ ଆମ ଆଗ ପିଢ଼ିର କଥା । ଏବେ ଆମେ ଅଲଗା ରୂପେ ଅନୁମାନ କରିପାରିଲୁଣି ଯେ, ଦଫାଦାରଙ୍କ ଝିଅ ହେଲେ, ମଶାଣିଚଣ୍ଡୀ ଖାଏ । ଅନ୍ୟମାନଙ୍କ ନାଁରେ କଳଙ୍କର କଳଗାଉଣା ବାଜେ କେବଳ । ମାତ୍ର ସେତେବେଳେ ଆମେ ଭାବୁଥିଲୁ – ସିଏ କାହିଁ ମଶାଣିଚଣ୍ଡୀଙ୍କ ଜଳଖିଆ ହେବାକୁ ଜଙ୍ଗଲଟାକୁ ଆସୁଥିଲା ? ମଶାଣିଚଣ୍ଡୀଗୁଡ଼ା ଗାଈଗୋରୁ ଛେଳି କୁକୁର କାହାରିକୁ ଖାଆନ୍ତିନି, ଖାଲି ମଣିଷ ଦେଖିଲେ ଗୋଡ଼େଇ ଗୋଡ଼େଇ ଖାଇଯାଆନ୍ତି । ଦଫାଦାର-ଝିଅ ଏତିକି ଜାଣିପାରିଲାନି କେମିତି ? ମରଣର ଏଡ଼େ ବଡ଼ ଲିଷ୍ଟ ଦେବାରେ ଆମର ଗୋଟିଏ କାରଣ ଅଛି । ରଫିକ୍‌ଚାଚା କ'ଣ ସୁଆଗିଆ ନାଗର ? ହଜ୍‌ମତ୍ ଅଲ୍ଲୀଙ୍କ ଝିଅ ଛଡ଼ା ଯେତେ ମଲେ, ସେମାନଙ୍କର କେହି ସ୍ୱଷ୍ଟ–ଗୋପନ ଭଲପାଉଥିବା ଲୋକ ନ ଥିଲେ କି ? ବାଆଜୀକୁ ଭୁଲ ନ ଭାବି ମଧ୍ୟ ସନ୍ଦେହ କରୁଥିଲି ଏଇ ଗୋଟିଏ କାରଣରୁ । ଆଉ କାହିଁ କେହି ତ ସେଠି ବସନ୍ତିନି ?

ସେତେବେଳେ ଅନୁମାନ କରୁଥିଲି, ପରେ ପରେ ଜାଣିଲି । ରଫିକ୍‌ଚାଚାଙ୍କର ଏକ ସୁନ୍ଦର ଦୀପ୍ତିମୟ ସଂସାରୀ ଜୀବନ ଥିଲା । ପ୍ରେମ ଏକା କାହିଁକି, ଅନେକ ଲଳିତ କଥା ମଣିଷମାନଙ୍କ କାଚ ଗୁଳି ଆଖି ତଥା ଟର୍ହିର ପ୍ରତିଫଳନ-ବିଜ୍ଞାନ ବାଟେ ଦେଖା ଯାଏନି । ହଜମତ୍ ଅଲ୍ଲୀଙ୍କ ଝିଅ ଗବିନା ବ୍ୟାପାର ସତ ହୋଇଥାଇପାରେ ବି ।

ରଫିକ୍‌ଚାଚାଙ୍କୁ ନିତି ଦେଖେ । ନିଘା ଦେଇ ନ ଥିଲି । ଦିନକର ଗୋଟିଏ ଘଟଣାପାଇଁ ମୁଁ ତାଙ୍କୁ ଏକତରଫା ଭଲ ପାଇବସିଲି ।

ଗୋଟିଏ ଛୋଟ ଛେଳିଛୁଆକୁ ସେ ଛାତିରେ ଆଉଜେଇ ଧରିଥା'ନ୍ତି । ମା' ଯେମିତି ପିଲାକୁ କ୍ଷୀର ଦିଏ, ସେମିତି । ଛୁଆଟା ବିକଳ ଚିତ୍କାର କରୁଥାଏ । ଆଉ ଦୁଇଟି ଛୁଆ ସେଇଠି କୌତୁକରେ ଖେଳୁଥା'ନ୍ତି । ମା'-ଛେଳିଟି ଅସହାୟ, କରୁଣ ଭାବେ ଅନାଇ ଥାଏ ନିଜ ଛୁଆକୁ । ସେଇ ଭାବ ଅବ୍ୟକ୍ତ । ପ୍ରତିରକ୍ଷା ଦାୟିତ୍ୱ ସତ୍ତ୍ୱେ

ମା' ଯେତେବେଳେ ଅସହାୟ ହୋଇପଡ଼େ, ମନ ଭିତରେ ତା'ର ସମଗ୍ର ବ୍ରହ୍ମାଣ୍ଡ ଘୂରୁଥିଲେ ବି ଛୋଟ ଛୋଟ ଆଖି ଦୁଇଟିରୁ ଅବୋଧ ପଣ ଛଡ଼ା କିଛି ବାରି ହୁଏନି । ଇଚ୍ଛା କଲେ କେହି ମା' ହୋଇ ପାରନ୍ତିନି । ସେମିତି ଇଚ୍ଛା କଲେ କେହି ଅବୋଧ ହୋଇ ପାରନ୍ତିନି ! ଏବେ ବୁଝି ପାରିଛି ମାତୃତ୍ୱର ଅନେକ ଅବୁଝାପଣ ଥାଏ, ଯାହା ପ୍ରେମଠାରୁ ବିସ୍ତର ଗହଳିଆ, ଅନ୍ଧାର ଠାରୁ ମଧ୍ୟ ଅନ୍ଧ । ଅଥଚ ଉତ୍ସ ଦେଖା ନ ଯାଉ ପଛେ, ଆଲୋକିତ ।

ସ୍ୱାଭାବିକ ଗମ୍ଭୀର ପ୍ରକୃତିର ରଫିକ୍‌ଚାଚା ଭାରି ନିରୀହ ଦେଖାଯାଉଥିଲେ । ସେ ଛେଳି ଛୁଆଟିର କଅଁଳ ଭଙ୍ଗା ଗୋଡ଼ରେ ଗନ୍ଧୀକ୍ଷୀର ଲଗା କଦଳୀ ପଟୁକା ଖଣ୍ଡେ ବାନ୍ଧୁଥା'ନ୍ତି । କ'ଣ ହେଲା, ପଚାରିବା ପ୍ରଶ୍ନକୁ ସେ ଏଡ଼େଇ ଦେଇଥିଲେ । ପରେ କହିଲେ, ''ରତନପୁର ସତୁରା ଦା' କା ଲଡ଼୍‌କା । ବେହୁଦା କାହାଁକା । ସାଇକେଲ ଚଲାତା ଯୈସେ ଚେଭରଲେଟ୍ ଐସା । ମାରା ଔର ଭାଗା । ଥୋଡ଼ିସି ଭି ଇନ୍‌ସାନିୟତ୍ ନହିଁ ହୈ । ମୈଁ ହାଁ-ହାଁ କରତା, ଓ୍ୱ ଭାଗ୍‌ଗୟା । ଏ ପଦିଆ ମା କା ବକ୍‌ରି । ବୁଢ଼ୀକେ ଲିୟେ ଔର ଆଲ୍ଲାନେ ରଖା ହୈ କିୟା ?'' ବାସ୍, ସେତିକି କଥା । ସେ ଛେଳି ଛୁଆ ସାଙ୍ଗରେ ଲାଗିଥିଲେ, ମୋତେ ଅନେଇ ନାହାଁନ୍ତି ।

ଦୟା ଓ ବିରକ୍ତି ମିଶିଲେ ରୂପ ଯେମିତି ବଦଳିଯାଏ, ସେ ସେମିତି ଦେଖାଯାଉଥିଲେ । ଭିନ୍ନ ଭିନ୍ନ ଧର୍ମକୁ ଆଶ୍ରା କରିଥିବାଯୋଗୁ ମଣିଷ ମଣିଷ ଭିତରେ ବିଦ୍ୱେଷ ଯେ ହୋଇପାରେ, ମଫସଲୀ ଜଙ୍ଗରେ ବଢ଼ିଥିବା ଆମ ବୟସର ପିଲାଏ ଏ କଥା ଜାଣି ନ ଥିଲୁ ।

ସେଦିନ ରଫିକ୍‌ଚାଚା ଏକଦମ୍ ନିଆରା ଦେଖାଯାଉଥିଲେ । କେମିତିକା ଦେଖାଯାଉଥିଲେ, ତାହା ଆଜି ମୁଁ ଠିକ୍ ଭାବି ପାରୁନି । କାରଣ ସେଦିନର ନିର୍ମଳ ମନ ମୋର ଆଜି ଅଛି କି ? ତଥାପି ..... । କ୍ୟାଲେଣ୍ଡରରେ ମଦର୍ ମେରୀ ମେଣ୍ଢାଛୁଆ ଧରିବା ଚିତ୍ର ବା ଯଶୋଦା ବାଳୁତ କହ୍ନାଇକୁ ଆକଟ କରିବାର ରୂପ ପ୍ରାୟ ସେମିତିକା । ତାଙ୍କ କରୁଣା ଆହତ ଛେଳିଛୁଆ ପାଇଁ ବା ପଦିଆ ମା' ଅର୍ଥନୀତିପାଇଁ ଥିଲା, ସେତେବେଳେ ଏତେ କଥା ଅନୁଶୀଳନ କରିବାର ସାମର୍ଥ୍ୟ ନ ଥିଲା ବା ବର୍ତ୍ତମାନ ସେତିକି ନିରପେକ୍ଷତା ନାହିଁ । କେତେକ ମୁସଲମାନ ଛେଳି କାଟୁଥିବା ବିଚାରି ସମସ୍ତଙ୍କୁ ହିଂସ୍ର ବୋଲି ଧରିନେବା ସହିତ ଆମ ଗାଁ ମଥୁରା ଧୋବାର ଛେଳି କାଟିବା ବିଷୟ ବିଚାରିଲେ, ଆଜି ଏପରି ମାନସିକ ତାରତମ୍ୟର କୈଫିୟତ ମୋ ପାଖରେ ନାହିଁ ।

ମନେଅଛି, ପହଞ୍ଚିବାରେ ବିଳମ୍ବଯୋଗୁ ମୁଁ ସେଦିନ ଟିଉସନ୍‌ରେ ମାଡ଼ ଖାଇଥିଲି । ସାର୍‌ଙ୍କୁ ଯାହା ସେଦିନ ବୁଝାଇ ପାରି ନ ଥିଲି, ଆଜି ସେଇ କଥା ଲେଖୁଛି । ସମାଜ-ଯୋଗ୍ୟ ହେବାପରେ କେତେ କଥା ପଢ଼ିଛି, କେତେ ଜାଗା ବୁଲିଛି, କେତେ ଧାର୍ମିକ କଳିକନ୍ଦଳର ତଦାରଖ କରିଛି, ମୁଲ୍ଲା-ମୁତାସିବ୍ ବା ସାରଭୃତ୍ ସ୍ୱାମୀମାନଙ୍କ ଠାରୁ କେତେ ଧାର୍ମିକ ବାଣୀ ଶୁଣିଛି ବା ଈଶ୍ୱରଙ୍କ ନାନାଦି ନାଁ ବାଟେ ନିଜେ ବି ଅନେକ ଫିସାଦି କରିଛି, ହେଲେ ରଫିକ୍‌ଚାଚା ଓ ଛେଳିଛୁଆ ଘଟଣାପରି ନିର୍ମଳ ଭାବ ଆଉ ଥରେ ମୋ ମନକୁ ଆସି ନାହିଁ ।

ଆଉ ଜଣଙ୍କ କଥା ।

ରତନପୁର ହରିଦାସ ପାଲଙ୍କ ପିତା ନିତେଇ ପାଲ ପୂର୍ବ ପାକିସ୍ଥାନରୁ ଆସିଥିବା ଜଣେ ଶରଣାର୍ଥୀ । ଆମ ଅଞ୍ଚଳରେ ନଳିତା ଚାଷ ପ୍ରଚୁର ହେଉଥିଲା । ନିତେଇ ପାଲଙ୍କ ଝୋଟ ଗୋଦାମର ନାଁ ଡାକ ଥିଲା ।

ଶୁଣିଛୁ, ସେ ପୂର୍ବ ପାକିସ୍ଥାନ ଛାଡ଼ିବାପୂର୍ବରୁ ମଇମନ୍‌ସିଂ ଓ କିଶୋରଗଞ୍ଜ ଠାରେ ଅଚଳାଚଳ ସଂପତ୍ତିର ମାଲିକ ଥିଲେ । ଦେଶ ବିଭାଜନବେଳେ ତାଙ୍କ ସମଗ୍ର ସଂପତ୍ତି ଲୁଟ୍ ହେଲା । ସ୍ତ୍ରୀ, ଯୁବତୀ କନ୍ୟା, ହରିଦାସଙ୍କ ବଡ଼ ଭାଇ ବିଷ୍ଣୁଦାସଙ୍କୁ ହତ୍ୟା କରାଯାଇଥିଲା । ଦୁର୍ଦ୍ଦିନର ସବୁ ଜଘନ୍ୟତା ଭିତରେ ପଶି ନିତାଇ ପାଲ ଏବଂ ବାଳକ ହରିଦାସ ପାଲ କେମିତି ଆସି ଆମ ଅଞ୍ଚଳରେ ପହଞ୍ଚିଲେ, ସେ ବିଷୟରେ ସଠିକ୍ ଠାରୁ ବୋଧହୁଏ ବେଠିକ୍ ବିବରଣୀ ବେଶୀ ଶୁଣାଯାଏ । ତାଙ୍କରି ଜୀବନକାଳ ଭିତରେ ସେ ପୁଣି ଧନୀ ହେଲେ । ଚର୍ଚ୍ଚା ହେବା ସ୍ୱାଭାବିକ ।

ଲୋକେ ବିଶ୍ୱାସ କରିଥିବା ଗୋଟିଏ କଥା । ସେ କୁଆଡ଼େ କଟକୀ କୋଡ଼ିଏ ସେର ସୁନା ସାଙ୍ଗରେ ନେଇଆସିଥିଲେ । ଏପରି ଗ୍ରାମ୍ୟ-ସମ୍ବାଦର ଆରପଟ କଥା କେହି କହନ୍ତି ନି । ସେ କାହାରି ଘରୁ ସୁନା ଚୋରି କରି ନ ଥିଲେ ବା ଆତ୍ମହତ୍ୟା କରି ନ ଥିଲେ ବା ସନ୍ନ୍ୟାସୀ ହୋଇଯାଇ ନ ଥିଲେ, ଇତ୍ୟାଦି । କେହି ଯଦି ନିଜ ଉଦ୍ୟମ, କୌଶଳ, ବୁଦ୍ଧି ଯୋଗୁ ଧନୀ ହୋଇପାରିଲା ତାହା ତାରିଫ୍ କରିବାକୁ ଯେଉଁ ଗଣିତ ଦରକାର ସେଥିପାଇଁ ପଣିକିଆ ଜଣା ନ ଥିବାରୁ ସଟ୍‌କଟ୍ ପ୍ରଚାରଟିଏ ଫାନ୍ଦିବା ସୁବିଧା ନୁହେଁ କି ?

ସ୍ୱଳ୍ପ କାଳପାଇଁ ମର୍ମାନ୍ତକ ଦୁଃଖ ସେ ପାଇଥିବେ । ପୁଣି ଧନୀ ହେଲେ । ମେଜାଜ୍ ବଡ଼ଲୋକୀ । ଏକ ମାତ୍ର ସନ୍ତାନ ପଟ୍‌ଲୁ ବା ପ୍ରମଥେଶଙ୍କ ଜନ୍ମବେଳେ ସେ

ବିପତ୍ନୀକ ହେଲେ ! ଆମେ ଯାହା ଶୁଣିଛୁ ତାଙ୍କର ଧନ ଥିବାରୁ ପ୍ରଭୁତ୍ୱ ଥିଲା । ସେଇ ବୟସରେ ସେ ଯୌବନର ଆଉଟା ସୁନା ପରି ଢଳ ଢଳ ହେଉଥିଲେ । ଏତେ କଥା ସହିତ, ସେ କୁଆଡ଼େ ଅବିବେକୀ ନ ଥିଲେ । ଝୋଟ ବ୍ୟବସାୟ ସହିତ ସେ ମାହାଜନୀ କରୁଥିଲେ । ତାଙ୍କ ମାହାଜନୀ ବିଷୟରେ ଯେତେ ଗପ ଶୁଣାଯାଏ, ସେଥିରୁ ବୁଝି ହେଉଛି ଯେ ବୋଧହୁଏ ମାହାଜନୀ ତାଙ୍କର ବ୍ୟବସାୟ ନ ଥିଲା ବା କାହାରି ଦୁଃଖ ଅନୁଭବ କଲେ ସେ ତାକୁ ଦାନ ଦେଇ ବଶମ୍ବଦପଣ ଆଦାୟ କରୁ ନ ଥିଲେ – ଖାଲି ତମସୁକଟିଏ ରଖୁଥିଲେ । ନାମକାୱାସ୍ତେ । ଖିଲାପକାରୀ ବେଶୀ, କିନ୍ତୁ କୋରଖ କାହାରି କେବେ ହେଁ ସେ କରାଇ ନ ଥିଲେ । ଏକଥା ଲୋକେ ଆଜି ମଧ ଉଭୟ ପରିହାସରେ ବା ଗମ୍ଭୀର ଆଲୋଚନାରେ ସ୍ୱୀକାର କରନ୍ତି ।

ଆଗରୁ କୁହାଯାଇଥିବା ରଫିକ୍‌ଚାଚା ଓ ଛେଲିଛୁଆ ପ୍ରସଙ୍ଗ ପରେ ପରେ ଆମ ସମଗ୍ର ଅଞ୍ଚଳରେ ବିଷାଦର ଛାୟା ଖେଳେଇଲା ପରି ଗୋଟିଏ ଏପରି ସୂଚନା ପହଞ୍ଚିଲା, ଯାହା ପରବର୍ତ୍ତୀ ବହୁ ବର୍ଷ ପର୍ଯ୍ୟନ୍ତ ଲୋକଙ୍କ ଗାଉଁଲି ମନକୁ ଅସାଷ୍ଟମ କରି ରଖିଲା, ବୋଲନ୍ତୁ ।

ଥରେ ଜିଲ୍ଲା ସଦର ମହକୁମାରୁ ଦଳେ ପୁଲିସ୍, ଜଣେ ହାକିମ ଆସିଲେ । ଆଜିକାଲି ଯେମିତି ଜିପ୍-କାର୍‌ରେ ଆସୁଛନ୍ତି, ସେମିତି ନୁହେଁ । ସେର୍‌ପା ତେନ୍‌ଜିଂ ଏଭରେଷ୍ଟ ଅଭିଯାନ ପରିକା କଥା । ସେ ଦୃଶ୍ୟରୁ ମୋର ବି ଟିକେ ଟିକେ ମନେ ଅଛି । ହାକିମ ନେକ୍ଟାଇ ଓ ଥ୍ରୀ-ପିସ୍‌ରୁ ମାତ୍ର ଟୁ-ପିସ୍ ଏବଂ ଗାମୁଛା ପିନ୍ଧିଥା'ନ୍ତି । ତାଙ୍କ ପ୍ୟାଣ୍ଟ ଓ ଜୋତା ଜଣେ ସିପାହି ଧରିଥାଏ । ଇଂଲିଶ୍ ହାକିମମାନେ କୁଆଡ଼େ ଘୋଡ଼ା ଚଢ଼ା ଶିଖିଥିଲେ । ଓଡ଼ିଆ ହାକିମ ସେକଥା ବି ଜାଣି ନ ଥାନ୍ତି । ସେମାନେ ଖୋଜି ଖୋଜି ରଫିକ୍‌ଚାଚାଙ୍କ ଘରେ ପହଞ୍ଚିଲେ ।

କିଛି କେହି ନ ଜାଣି ମଧ 'ବାବୁ'ଙ୍କୁ ଦେଖିବାପାଇଁ ପ୍ରବଳ ଭିଡ଼ । ଏପରିକି, ଆଖପାଖ ଗାଁ'ର ହେଡ୍‌ପଣ୍ଡିତମାନେ ନିଜ ନିଜ ଇସ୍କୁଲ ଛୁଟି କରିଦେଇଥିଲେ । ରଫିକ୍‌ଚାଚାଙ୍କ ଘର ଆଗରେ ଜନସମୁଦ୍ର । ବାବୁ ଖବର ନେଲେ, ଆଲିଗଡ଼ରେ ରହୁଥିବା ପରିବାର ସହ ତାଙ୍କ ପୁଅ ଇଦ୍ରିଶ୍‌କୁ ଦଙ୍ଗାରେ 'କେହି' ମାରିଦେଇଛନ୍ତି । ସେମାନେ ଗୋଟିଏ ଜୋତାବାକ୍ସ ଭଳି ବାକ୍ସଟିଏ ଆଣିଥିଲେ । ସିପାହି ଜଣେ ତାହା ପିଣ୍ଡାରେ ଥୋଇଦେଲା । ହାକିମ କହିଲେ, ''ଏଇ ତମର ଇଦ୍ରିଶ୍ । ରୀତି ଅନୁଯାୟୀ ସଂସ୍କାର କରିବ । ସରକାର ଦେଇଛନ୍ତି, ଦଶ ଟଙ୍କା ରଖ ।''

ଇଦ୍ରିଶ୍ ଆମଠାରୁ ବୟସରେ ଦୁଇ ତିନି ବର୍ଷ ବଡ଼ । ସାଙ୍ଗ ହୋଇ ଖେଳୁଥିଲୁ । ଆଜି ବି ମୋର ସ୍ପଷ୍ଟ ମନେପଡୁଛି, ସାଧାରଣ ଲୋକେ ବାଉଳା ହେଉଥିଲେ : ଦଙ୍ଗା କ'ଣ ?

ଚାରୁ ମାଷ୍ଟ୍ରେ ମେଲଣ ପଡ଼ିଆ ଦୋଳବେଦୀ ଉପରେ ଠିଆହୋଇ ଲୋକଙ୍କୁ ବୁଝାଉଥିଲେ । ପଣସଢିଅ ଅନାବାଦୀପାଇଁ ଯେମିତି ଘମାଘୋଟ ଫୌଜଦାରି ହୋଇଥିଲା, ସହରରେ ସେମିତି ହେଲେ ତାକୁ କହନ୍ତି ଦଙ୍ଗା । ସେପରି ବର୍ଣ୍ଣନା ଶୁଣି ଲୋକେ ଆତଙ୍କିତ ହୋଇପଡୁଥିଲେ ।

ହେ ଚାରୁମାଷ୍ଟ୍ରେ, ତୁମ ଖବର ମୁଁ ରଖି ନାହିଁ । ହେଲେ, ତୁମେ କେତେ କମ୍ ନ ଜାଣିଥିଲ ଟି । ଆଞ୍ଜୁଳାଏ ପାଣି ଦେଖେଇ ତାକୁ ସମୁଦ୍ର ବୋଲି ବୁଝାଇ ଦେଲ !

ବାକ୍ସରେ ଥିବା 'ଇଦ୍ରିଶ୍'କୁ ଦେଖି ମିଣିପେ-ମାଇପେ କିଏ ନ କାନ୍ଦିଛନ୍ତି ? କେବଳ ରଫିକ୍‌ଚାଚାଙ୍କ ଛଡ଼ା ।

ସେ ନିଜେ ଥିଲେ ବିପତ୍ନୀକ । ଏକମାତ୍ର ସନ୍ତାନ ଇଦ୍ରିଶ୍ ତାଙ୍କ ଜୀବନ । ତାଙ୍କ ମାଉସୀ-ଝିଅ ଭଉଣୀ ବାହା ହୋଇଥାଏ ତାଙ୍କର ଜଣେ ଦୂର ସଂପର୍କୀୟ ଭାଇକୁ । ସେମାନଙ୍କ ପ୍ରସ୍ତାବ ଅନୁଯାୟୀ ସେମାନଙ୍କ ସହିତ ଇଦ୍ରିଶ୍ ପାଠପଢ଼ିବାକୁ ଗଲା ଆଲିଗଡ଼ । ଆମ ଅଞ୍ଚଳରେ ପାଠ ପଢ଼ିବା ସୁଯୋଗ ନ ଥିଲା । ବୋଧହୁଏ, ନିଜର ସମୟଠାରୁ ରଫିକ୍‌ଚାଚାଙ୍କ ସ୍ୱପ୍ନର ନାଟକଟି ବଡ଼ ହୋଇଗଲା । ଯିବାଠାରୁ ବର୍ଷଟିଏ ବି ପୂରି ନଥାଏ, ଇଦ୍ରିଶ୍ ପୁଣି ଧର୍ମର ଗୋଟିଏ ଛୋଟିଆ ବାକ୍ସରେ ପଶି ବାହୁଡ଼ି ଆସିଲା !

ମାନସିକଭାବେ ନିଃସଙ୍ଗ ରଫିକ୍‌ଚାଚା । କ'ଣ ଗୁଣୁ ଗୁଣୁ ହୁଅନ୍ତି । ଏକାନ୍ତରେ । ତାଙ୍କ ବିଷୟରେ ଶୁଣିଥିବା କଥା ଅନୁଯାୟୀ ସିଏ ଏମିତି ଯାଇତାଇ ଲୋକ ନ ଥିଲେ । ସେତେବେଳକୁ ଭାଙ୍ଗି ଯାଇଥିବା ଆମ ଗାଁ ଯାତ୍ରାଦଳର ସେ ଥିଲେ ମ୍ୟୁଜିକ ମାଷ୍ଟର । ତାଙ୍କ କଣ୍ଠରୁ ସୁର-ସଙ୍ଗୀତ-ମୂର୍ଚ୍ଛନା ମୁଁ କେବେ ଶୁଣି ନାହିଁ । କିନ୍ତୁ ତାଙ୍କର ଅନେକ ପ୍ରଶଂସକ ଏବେ ବି ବଞ୍ଚିଛନ୍ତି ।

ଜୟଦେବ-ଦୀନକୃଷ୍ଣ-ଭଂଜ-ଗୋପାଳକୃଷ୍ଣ ଅନେକ ସେ କୁଆଡ଼େ ମନେ ରଖି ଥିଲେ । ପୁଅ-ଝିଅ ଉଭୟ କଣ୍ଠରେ ସେ ଗାଇ ପାରୁଥିଲେ । ନିଜେ ବି ଥିଲେ ଜଣେ କମ୍ପୋଜର୍ ।

ଚଇଁ ସାମଲ ବୁଢ଼ା କୋଉଦିନୁ ମଲେଣି । ତାଙ୍କ ସାଂସାରିକ ଚଳଣି ଯାହା, ନିର୍ମାଲ୍ୟ ଛୁଇଁ କହିଲେ ବି ସେ ଜଣେ 'ସଙ୍ଗୀତ ପ୍ରେମୀ' – ଏ କଥା କେହି ବିଶ୍ୱାସ କରିବେ ନାହିଁ । ସେ ରଫିକ୍‌ଚାଚାଙ୍କର ଗୋଟିଏ ନାଗର-ନାଗରୀ ଡୁଏଟ୍ ନିଜ ଖୁସି ବେଳେ ବାରମ୍ବାର ଗାଉଥିଲେ । ଏମିତି ହୋଇପାରେ, ତାଙ୍କର ସେତିକି ହିଁ ମନ ଛୁଇଁଥିବ ଓ ମନେରହିଥିବ ।

ବାରମ୍ବାର ଶୁଣି ମୁଁ ପାମର ତାହା ପାଠ୍ୟ ପୁସ୍ତକର ପଛ ପୃଷ୍ଠାରେ ଟିପି ଦେଇଥିଲି । ସେଥିପାଇଁ ମୋ ଅତୀତର ନାନାଦି ଅପଯଶ ଚର୍ଚ୍ଚା ଝିଅ-ଝିଆରୀ-ବୋହୂମାନେ କରିଥିବା ଶୁଣିଛି । ମୁଁ କାହିଁକି ଜଣେ ସଫଳ ବିଦ୍ୟାର୍ଥୀ ହୋଇପାରି ନଥିଲି, ଏ ଗୀତ ହିଁ କୁଆଡ଼େ ଥିଲା ତା'ର କାରଣ । ଏମ୍.ଏ., ପିଏଚ୍.ଡି, ବା ତତ୍‌ତୁଲ୍ୟ ବିଶ୍ୱବିଦ୍ୟାଳୟ ଶିକ୍ଷା ହାସିଲାତ୍‌କାରିଣୀମାନଙ୍କର ଏହା ହିଁ ଥିଲା ମତ ବୋଲି ପରୋକ୍ଷରେ ଶୁଣିଛି । ସେମାନଙ୍କପାଇଁ ମୋର କନ୍‌ସେସନ୍ ଅଛି । ସେମାନେ ଖୁବ୍ ବେଶୀରେ ପ୍ରୋସେନିଅମ୍ ଥିଏଟର ପର୍ଯ୍ୟନ୍ତ ଦେଖିଥାଇପାରନ୍ତି । ଯାତ୍ରା, ସୁଆଙ୍ଗ, ଗୋଟିପୁଅ ନାଚ ଆଦି କଥା ସେମାନେ ଜାଣିବେ କାହୁଁ ?

ଟିପା ହୋଇଥିବା ଗୀତଟି ଥିଲା :

''ନାଗର – ନିତି ନିତି ବାଟ କାଟି ହଟ କରୁ
ମୁହଁକୁ ଫୁଲେଇ ଥାଉ
ନାଗରୀ ଲୋ, ମୁହଁକୁ ଫୁଲେଇ ଥାଉ
ଆଜି ଫୁଲ ଶର କିଏ-ମାଇଲା
ମୋ ନାଗରୀ ଲୋ ?
ତତେ ଖୋଜୁନି, ମୁଁ ତତେ ଖୋଜୁନି
କିଆଁ ପାଖରେ ଗେହ୍ଲେଇ ହଉ
ନାଗରୀ ଲୋ, ପାଖରେ ଗେହ୍ଲେଇ ହଉ ?
ନାଗରୀ – ହଟ ମୁଁ ଶିଖିନି ଆରେ ଦଗାଦିଆ
ମନ ମୋର ବନ ଫୁଲ
ନାଗର ରେ, ମନ ମୋର ବନ-ଫୁଲ ।
ଘୁମରେ ଘୁମରେ କାହାକୁ ଖୋଜୁଚୁ
ନାଗର ରେ
ଫୁଲ ଏଇଠି, ମୁଁ ଫୁଲ ଏଇଠି
ଆଜି ଠିକଣା କରିଦେ ମୂଲ ।''

ଏଇ ଗୀତ ବୋଲିଲାବେଳେ ଚଇଁ ସାମଲଙ୍କ ପରି ବୁଢ଼ା ନିଜ ପାକୁଆ ପାଟି ଥରେଇ, ଗଳାର ଶିରା ସବୁ ଫୁଲେଇ ଯେମିତି ତନ୍ମୟ ହୋଇପଡୁଥିଲେ, ସେଇ ଦୃଶ୍ୟ ଇଚ୍ଛା କଲେ ମୁଁ ଆଜି ବି ମନେ ପକାଇପାରୁଛି । ରଫିକ୍‌ଚାଚାଙ୍କଠାରୁ ମୁଁ କେବେ ଗୀତ ଶୁଣି ନାହିଁ । ସେପରି ଆଶା ଆମେ କାହିଁକି ବା କରିଥାଆନ୍ତୁ ? ବେଳେବେଳେ ମନେହୁଏ, କେଉଁ ସୌଖୀନ ସଇତାନ୍ କାହିଁକି ବା ତାଙ୍କ ତାନ୍‌ପୂରାର ତାରଗୁଡ଼ାକ ଛିଣ୍ଡେଇଦେଲା ? ବା, ମୁଁ କାହିଁକି ଚଇଁ ସାମଲଙ୍କ ବୟସର ନ ହେଲି ଟି ? ନିଜେ ଶୁଣିପାରିଥା'ନ୍ତି ।

ଗ୍ରାମାଞ୍ଚଳର ଲୋକେ ନାନା ଭାବେ ସଂପର୍କରେ ବାନ୍ଧିହୋଇ ରହୁଥିଲେ । ଆମ ଗଳ୍ପ ସହିତ ସଂଶ୍ଳିଷ୍ଟ, ତିନି ଜଣଙ୍କ ମିଳାମିଶା ଏକଦମ୍ ଭାବଗତ ଥିଲା । ହରିଦାସ ପାଲ୍, ରଫିକ୍‌ଚାଚା ଓ ଆମ ସାର୍ ଶ୍ରୀଯୁକ୍ତ ବିଶ୍ୱକେତନ ପ୍ରହରାଜ । ସେମାନଙ୍କ ଦୈନିକ ମିଳନ ସ୍ଥାନ ଥିଲା ନିତେଇ ପାଲ୍‌ଙ୍କ ସମାଧି ବଗିଚା ।

ହରିଦାସ ପାଲ୍ ବାପାଙ୍କ ସମାଧି ଏବଂ ବଗିଚାକୁ ଯେମିତି ପ୍ରାଣର ନିର୍ଯ୍ୟାସ ଦେଇ ଗଢ଼ିଥିଲେ । ବିଗତ ନିତେଇ ପାଲ୍ ଏବଂ ଆଗତ ପଟ୍‌ଲୁ ପାଲଙ୍କ ମଧ୍ୟବର୍ତ୍ତୀ ଅଞ୍ଚଳଟି ତ ନିଶ୍ଚୟ ତାଙ୍କର, ମାତ୍ର ଆଶ୍ୱାସନା ଓ ଅନାଶ୍ରିତତା ଭିତରେ ସେ ନିଜର ପୁରୁଷାକାରକୁ ଲୀନ କରିଦେଇଥିଲେ ଯେମିତି ।

ଆମେ ଶୁଣିଥିବା କଥା । ବାପାଙ୍କ ମରଣ ପରେ ସମାଧି ନିର୍ମାଣ ଓ ବଗିଚା ତିଆରି ପାଇଁ ସେ କୁଆଡ଼େ ପୂରା ଦୁଇ ବର୍ଷ ଅକ୍ଳାନ୍ତ ପରିଶ୍ରମ କରିଥିଲେ । ସମାଧି କେଡ଼େ ସୁନ୍ଦର ସୁନ୍ଦର ମାର୍ବଲ ପଥରରେ ତିଆରି ହୋଇଥାଏ । ଏଇ ବୟସର ବହୁ ପରେ ମୁଁ ଅନେକ ମିନାର ଦେଖିଛି, ଅନେକ ପାର୍କ ଦେଖିଛି । ନିତେଇ ପାଲ୍‌ଙ୍କ ସମାଧି ଓ ବଗିଚା ସେସବୁ ତୁଳନାରେ କିଛି ନୁହେଁ । କିନ୍ତୁ ସେଠି ଏମିତି କେତେକ ମନ-ମିରିଗ ନାଚୁଥିଲେ ଯେ ଯେଉଁମାନେ ଅନ୍ୟ ବନସ୍ତରେ ବଢ଼ିପାରି ନ ଥାନ୍ତେ ବୋଲି ଏବେ ବି ମୋତେ ଲାଗୁଛି ।

ନିତେଇ ପାଲ୍‌ଙ୍କ ସମାଧି । ଜମିଟି ପ୍ରାୟ ପାଞ୍ଚ ଏକର । ଗୋଟାଏ ପଟେ ତିନ୍ତ୍ରୋପ୍‌ଲା ନଈ, ଆର ପଟେ କେନ୍ଦ୍ରାପଡ଼ା କେନାଲ । ହରିଦାସ ବାବୁ, ରଫିକ୍‌ଚାଚା, ବିଶୁସାର୍ ମିଶି ପ୍ରାୟ ସେଇଠି ବସନ୍ତି । ସବୁଠୁଁ ସୁନ୍ଦର କଥା କହିବି ? କାହାରି ବିରୁଦ୍ଧରେ ବା ଛଳ ଛଦ୍ମ ଆଲୋଚନା ସେମାନଙ୍କୁ ଛୁଏଁ ନାହିଁ । ବିଶୁ ସାର୍

ଭଲଭାବେ ବଙ୍ଗଳା ଭାଷା ଜାଣିଥିଲେ । ହରିଦାସ ବାବୁ ଜନ୍ମରେ ବଙ୍ଗାଳୀ ହେଲେ ମଧ୍ୟ କାମଚଳାଭାବେ ମଧ୍ୟ ବଙ୍ଗଳା ଜାଣି ନ ଥିଲେ । ରଫିକ୍‌ଚାଚାଙ୍କ କଥା ଆଗରୁ କହିଛି । ଏମାନଙ୍କ ମିଳନ ପ୍ରାୟ ସାଂସ୍କୃତିକ । ମାତ୍ର ସ୍ୱାଭାବିକ ବିଷୟ-ବାସନାରେ ମଜ୍ଜିରହିଥିବା ଯେକୌଣସି ଲୋକ କୁଆଡ଼େ ଅନୁମାନ କରୁଥିଲେ ଯେ ହରିଦାସ ବାବୁଙ୍କୁ ଆଉ ଦୁଇ ଜଣ ପଟେଇ ରଖିଛନ୍ତି । ଅର୍ଥଲୋଭଯୋଗୁ । ହେ ଭଗବାନ, ଅସତ୍ୟ କ'ଣ ତୁମରି ପରି ନିରାକାର ?

ପରେ ପରେ ପୁରୀ ଜିଲ୍ଲାର କୌଣସି ଏକ ସ୍କୁଲକୁ ବିଶୁ ସାର୍‌ଙ୍କ ବଦଳି, ଯାବତ୍ ଅର୍ଥ ବ୍ୟୟ ସତ୍ତ୍ୱେ ବାବୁ ପ୍ରମଥେଶ ପାଲ୍ ମା' ସରସ୍ୱତୀଙ୍କ କୃପାରୁ ବଞ୍ଚିତ ହୋଇ ଚୂଡ଼ାନ୍ତଭାବେ ରେଭେନ୍ସା କଲେଜରୁ ଗାଁକୁ ବାହୁଡ଼ି ଆସିବା ଏବଂ ସେତେବେଳକୁ ନୂଆ ନୂଆ ସ୍ୱାଧୀନତା ଭିତରେ ପ୍ରଗତିର ସ୍ୱପ୍ନ ଦେଖିପାରିଥିବା ଜଣେ ମନ୍ତ୍ରୀ ଆମ ନଈରେ ପୋଲଟିଏ ତିଆରି କରିବେ ବୋଲି ପ୍ରତିଶ୍ରୁତି ଦେବା – ଏଇ ତିନୋଟି କଥାର ଆମ ଗପ ସହିତ ପ୍ରତ୍ୟକ୍ଷ ସଂପର୍କ ରହିଛି ।

ଏବେଏବେକୁ ଆମ ଅଞ୍ଚଳରେ କୋଠାବାଡ଼ି ନିର୍ମାଣ, ଲୋକେ ବଡ଼ ଛୋଟ ଚାକିରି, ଗାଁରେ ମଦ ଦୋକାନ, ପୁଲିସ ଫାଣ୍ଡି ପ୍ରତିଷ୍ଠା ପରି ଯଥେଷ୍ଟ ପ୍ରଗତି ହାସଲ କରିସାରିଲେଣି । ମୁଁ ନିଶ୍ଚିତଭାବେ କହିପାରେ, ସେ ସମୟରେ ଆମ ଇଲାକାରେ ଲୋକେ ଅନେକ ବିଷୟ ଜାଣି ନ ଥିଲେ ।

ଧରନ୍ତୁ, ରଜନୀଗନ୍ଧା । ଚାରୁମାଷ୍ଟ୍ରେ ବୁଝାଉଥିଲେ । 'ପଞ୍ଚୈତେ ଦେବତରବୋ ମନ୍ଦାରଃ ପାରିଜାତକଃ / ସନ୍ତାନ କଳ୍ପବୃକ୍ଷଶ୍ଚ ପୁଂସି ବା ହରିଚନ୍ଦନ ।' ହରିଚନ୍ଦନ ମାନେ ହେଲା ରଜନୀଗନ୍ଧା । ସ୍ୱର୍ଗ ପୁଷ୍ପ ।

ବାପାଙ୍କ ସମାଧିର ଚାରି ପଟେ ହରିଦାସ ପାଲ ପ୍ରଥମେ ଦୁଇ ଧାଡ଼ି କରି ରଜନୀଗନ୍ଧା ଲଗାଇଲେ । ଲୋକେ କହିଲେ, ଧାତ୍ ସେଗୁଡ଼ା କ'ଣ ବିଲାତୀ ଗଛ ହୋଇଥିବ ମ । ଯେତେବେଳେ ଫୁଲ ଫୁଟିଲା, କି ମହାର୍ଘ୍ୟ ସେ ବାସ୍ନା । କେତେ ଲୋକ ତାହା ଦେଖିବାକୁ ଯାଉଥିଲେ । ହରିଦାସ ବାବୁ କାହାକୁ ସ୍ତବକଟାଏ ତ ଆଉ କାହାକୁ ଗଣ୍ଡା କେତେ ଫୁଲ ଦେଉଥା'ନ୍ତି । ସମର୍ପଣରେ ବୋଧହୁଏ କିଛି ଆନନ୍ଦ ଥାଏ ।

ତାଙ୍କ ଛୋଟ ବେପାର ସୁସଂଗଠିତ । ଦୈନିକ ପ୍ରାୟ ଘଣ୍ଟେ ଦୁଇ ଘଣ୍ଟା ତଦାରଖରେ ତାଙ୍କର ଲକ୍ଷ ଲକ୍ଷ ଟଙ୍କାର ବେଉସା ସୁରୁଖୁରୁରେ ଚାଲିଥାଏ ।

ବିଜିନେସ୍ ମ୍ୟାନେଜ୍‌ମେଣ୍ଟର ମାର୍କିନ୍ ପାଠ ଜରିଆରେ ଏ କଥା ଆଜି ଅନାୟାସରେ ବୁଝିହେଉଛି । କିନ୍ତୁ ସେତେବେଳେ ଲୋକେ କହୁଥିଲେ – ହରିଦାସ ପାଲ ବଗଳାମୁଖୀଙ୍କୁ ବଶ କରିଛନ୍ତି ତ, ସେଇଥିସକାଶେ ।

ବିଶୁ ସାର୍‌ଙ୍କ ବଦଳି ଓ ବିଦାୟ ପରେ ହରିଦାସ ପାଲ ଏବଂ ରଫିକ୍‌ଚାଚା ସମାଧି ବଗିଚାକୁ ସେମିତି ଆସୁଥା'ନ୍ତି । ସେଇ ଜାଗାର ନାଁ ଆଗେ ଥିଲା, ନାଣ୍ଡୀ ସଉରୁଣୀ ଡିଅ । କାବ୍ୟ କବିତା ଆଉ ଆଲୋଚନା ବେଶୀ ହୋଇପାରୁ ନ ଥାଏ ସତ, ହେଲେ ନୂଆ କାମମାନ ସୃଷ୍ଟି ହେଉଥାଏ । ସେଇ ଡିଅରେ ଆଗରୁ ଅନେକ ଫଳ ଗଛ ଥିଲା । ଗୋଟେ ଜାମୁଡୋଳ ଗଛ ବି । ପୂର୍ବେ ପିଲାମାନଙ୍କର ସେଠି ଅଖଣ୍ଡ ରାଜତ୍ୱ ଥିଲା । ପରେ ସବୁ ଅଡୁଆ ହୋଇଗଲା । ଥରେ ହରିଦାସ ବାବୁ ବଗିଚା ପାଖରେ ବୁଲୁଥିବା ତିନି ଚାରିଟା ପିଲାଙ୍କୁ ଦେଖିପକାଇଲେ । ''କିବେ ହରିଆ ମକରା ମୂରଲୀ କାଛେ ଏସ । କେନେ ସ୍କୁଲ ଯାଇନ ବେ ?'' ରଫିକ୍‌ଚାଚା ବୁଝେଇଦେଲେ, ଏଗୁଡ଼ା ଜାମୁଡୋଳ ଖାଇବାକୁ ନୁଙ୍ଗୁପୁଙ୍ଗୁ ହେଉଛନ୍ତି ।

ସେ ସେଇଠି ମାଳୀ ଧୁରବାକୁ ଡାକି କହିଦେଲେ – ସବୁ ଫଳ ପିଲେ ଖାଇବେ । କେହି ଯଦି ଫୁଲରେ ହାତ ଦିଏ ତା' ଗୋଡ଼ ଭାଙ୍ଗିଦେବୁ । ସେଠାରେ ଫୁଲ ଅଞ୍ଚଳ ଓ ଫଳ ଅଞ୍ଚଳର ଭୌଗୋଳିକ ଅବସ୍ଥିତି ନିଆରା ନିଆରା ଥିଲା । କାହାରି ଗୋଡ଼ ଭାଙ୍ଗିବାପରି ଅପ୍ରିୟ କାର୍ଯ୍ୟ ଧୁରବାକୁ କରିବାକୁ ପଡ଼ି ନ ଥିଲା ଅବଶ୍ୟ । ଫଳ ପାଉଥିବା ପିଲାଏ କାହିଁକି ବା ଅଯଥାରେ ଫୁଲପାଇଁ ମନ ଡଙ୍କାନ୍ତେ ? ଫଳଠାରୁ ଫୁଲର ଦାର୍ଶନିକ ଦୂରତ୍ୱ କେତେ, ସେ କଥା ଅନେକ ଜାଣନ୍ତି ନି । ଆମେ ତ ସହଜେ ପିଲା ଥିଲୁ ।

ରଫିକ୍‌ଚାଚା ନିର୍ଦ୍ଧନ ନଥିଲେ । ଥିଲେ ନିଃସଙ୍ଗ । ତାଙ୍କ ଗାଁ ପ୍ରାଇମେରୀ ସ୍କୁଲ ମି:ଇ: ସ୍କୁଲରେ ପରିଣତ ହେବା ଯୋଜନା ହେଲା । ପାଖ ଚକ ବାର ଗୁଣ୍ଠ ସେ ଦାନ କରିଦେଲେ ନିଜ ଆଡୁ ।

ଗାଁ ଲୋକେ କୃତଜ୍ଞତାରେ ପ୍ରସ୍ତାବ ଦେଲେ, ସ୍କୁଲର ନୂଆ ନାଁ ଇଦ୍ରିଶ୍‌ର ସ୍ମୃତିରେ ହେବ । ସେ ବାରମ୍ବାର ମନା କରୁଥାନ୍ତି । କିନ୍ତୁ ପ୍ରସ୍ତାବ ଫେରସ୍ତ ହେଉ ନ ଥାଏ । ଥରେ ସେଥିପାଇଁ ମିଟିଂ ବସିଲା । ନାନା କଥା ଶୁଣି ଶୁଣି ଶେଷରେ ସେ କହିଲେ, ମୁଁ ଜଣେ ଧାର୍ମିକ ମୁସଲମାନ, ମାତ୍ର ପରଜନ୍ମରେ ବିଶ୍ୱାସ କରେ ନା ।

ଇଦ୍ରିଶ୍ ଆଉ କାହିଁ ? ମେହେରବାନି କର । ତାକୁ ଭୁଲିଯାଅ । ଇଦ୍ରିଶ୍ ମୋର କେହି ନୁହେଁ । ଜମି ମୋର । ମୁଁ ଦଉଚି । କାଲି ମୁଁ ବି ନ ଥିବି । ଖୁଦା ମେହେରବାନ – ଯୁଗଯୁଗକୁ ସେଇ ରହିବେ । ଏତକ କହିଲାବେଳେ ସେ ଯେଉଁ ଅବସ୍ଥାରେ ପହଞ୍ଚିଥିଲେ, ତାଙ୍କୁ ସମ୍ଭାଳି ହୋଇ ନ ଥାନ୍ତା । ସ୍ମାରକନିଧି ବିଶ୍ୱାସର ଆଉ ଜଣେ କେହି ପ୍ରସ୍ତାବ ଦେଲେ, ''ଚାଚା, ତମରି ନାଁରେ ସ୍କୁଲ ହେଉ ।''

ହେଇ କାନ୍ଦିବେ ହେଇ କାନ୍ଦିବେ ଅବସ୍ଥାରେ ପହଞ୍ଚିଯାଇଥିବା ରଫିକ୍‌ଚାଚା ହସିହେଲେ । ଭାଷାରେ କହିବାକୁ ହେଲେ ତାହା ନାଁ ହସ ହିଁ ହେବ । ସେ କହିଲେ, ''ଚୁଚୁନ୍ଦର୍ କେ ଶିର୍ ପର୍ ଚାମେଲି କା ତେଲ ? ଆରେ ଭାଏ, ଏ ସବ୍ ବାତ୍ ଛୋଡ଼ୋ । ଲୋ ୟା ନା ଲୋ ଜମିନ୍ ଇସ୍କୁଲ କା ହୋ ଗୟା । ମେଁ ରାଘବାକୋ ବୋଲ ଦୁଙ୍ଗା ଓ୍ୱ ମୁଗ୍ କା ହଲ (ହଳ) ନହିଁ ଡାଲେଗା ।''

ସମାଧି ବଗିଚାରେ ହରିଦାସପାଲ ଓ ରଫିକ୍‌ଚାଚା ଯୋଡ଼ି ହୋଇଯାଇଥା'ନ୍ତି । ଆମେ ଦେଖିବାରେ ପ୍ରାୟ ଦୁଇ ଏକର ପରିମିତ ଅଞ୍ଚଳ ବିଭିନ୍ନ କିସମ ଫୁଲରେ ହସୁଥାଏ । ଚମ୍ପା, ମନ୍ଦାର, କନିଅର ଏସବୁ ତ ଥାଏ । ବର୍ଷେ ବର୍ଷେ ବଢ଼ ବଢ଼ି ହେଲେ ଅନେକ ଉଜୁଡ଼ି ଯାଏ । ପୁଣି, ପ୍ରଳୟର ପାଦଚିହ୍ନ ହଜିଯାଏ ।

ହରିଦାସ ପାଲଙ୍କର ଅଦ୍ଭୁତ ଖେୟାଲ । ପାଖାପାଖି ଚାରି ପାଞ୍ଚ ଗାଁରେ ଯେତେ ଠାକୁର ଠାକୁରାଣୀ ଅଛନ୍ତି, ସବୁଠାକୁ ତାଙ୍କ ଚାକିରିଆ ଖଞ୍ଜା ଦେଲାପରି ଫୁଲ ପହଞ୍ଚାଉଥିଲେ । ସକାଳୁ ଉଠି ଗାଧୋଇ ନିଜେ ଫୁଲ ତୋଳନ୍ତି । କଦଳୀ ପତ୍ରରେ ବାସୁଙ୍ଗା ଦେଇ ବାନ୍ଧନ୍ତି । ସବୁଠାକୁ ପଠାନ୍ତି । ବର୍ଷ ପରେ ବର୍ଷ ଏହା ଅଭ୍ୟାସରେ ପଡ଼ିଯାଇଥିବାଯୋଗୁ ସମାଧି ବଗିଚା ଫୁଲ ଯେ ନିଶ୍ଚୟ ଆସିବ, ଏଥିପାଇଁ କୌଣସି ପୂଜାରୀଙ୍କର ସନ୍ଦେହ ନ ଥାଏ । କିନ୍ତୁ ଗୋଟିଏ ଆଶ୍ଚର୍ଯ୍ୟ କଥା, ପାଲ ମହାଶୟ ଜୀବନ ସାରା କୌଣସି ଦେବ-ଦର୍ଶନ କରି ନ ଥିଲେ । ଏହି ଫୁଲ ବିତରଣ କାର୍ଯ୍ୟଟିକୁ ରଫିକ୍‌ଚାଚା ଆହୁରି ବିସ୍ତାରିତ କରିଦେଇଥିଲେ । ଠାକୁର ଠାକୁରାଣୀ ଦର୍ଶନରେ ଯାଉଥିବା ଲୋକେ ଜଣାପଡିଯା'ନ୍ତି । ପୁଣି ଗାଁ କଥା । ସେ ସମସ୍ତଙ୍କୁ ଡାକି ଡାକି ପୁଳାଏ ଲେଖା ଫୁଲ ଦିଅନ୍ତି । ଧୀରେ ଧୀରେ ଲୋକେ ବି ଦୀପ ତଳ ପିମ୍ପୁଡ଼ି ପାଲଟିଗଲେ । ସମାଧି ବଗିଚା ହୋଇପଡ଼ିଲା ଫୁଲପାଇଁ ଏକ ଅକ୍ଷୟ ଭଣ୍ଡାର । ଦି'ଜଣଙ୍କ ମନ ହସୁଥାଏ ।

ହରିଦାସ ପାଲଭାବୁଥାନ୍ତି : ମା' - ହାରାଦୀ, ବିଷ୍ଣୁଦା' ବାବା, ତୁମେ ସମସ୍ତେ ଫୁଲ ହୋଇ ଫୁଟୁଚ । ଆଉରି ଫୁଟ ।

ରଫିକଚାଚା ଭାବୁଥାନ୍ତି: ଇଦ୍ରିଶ୍‌ରେ ! ଏତେବେଳକୁ ତୁ ଯୁଆନ୍ ହୋଇ ବୁଢ଼ା ଆବ୍‌ବାର ସେବା କରୁଥା'ନ୍ତୁ । ମୁଁ ତୋ ସେବା କରୁଛି । ଯେକୌଣସି କଢ଼ଟି ମୋତେ ତୋ ଭଳି ଦେଖାଯାଏ । ତୁ ଫୁଟିଲୁନି । ମୁଁ ଜାଣିଛି । ସେଥିରୁ ପ୍ରତ୍ୟେକଟି ଫୁଟିବ ।

କାହାଣୀରେ ଏଣିକି ସବୁ କଥା ଓଲଟ ପାଲଟ ହେବ । ଥରେ ହାଟ ପଡ଼ିଆରେ ମନ୍ତ୍ରୀ ସଭା କଲେ । ଘୋଷଣା କଲେ, ନଇରେ ପୋଲ ହେବ । ଆଗ କାଳର କଥା, ଯେତେବେଳେ ମନ୍ତ୍ରୀମାନଙ୍କ କଥା ବିଶ୍ୱାସ କରାଯାଉଥିଲା ।

ବିଦ୍ୟାରେ ସଫଳତା ହାସଲ କରି ନ ପାରିଥିବା ପଟ୍‌ଲୁବାବୁଙ୍କ କଳଙ୍କ ଅଳ୍ପ ଦିନ ଭିତରେ ପୋଛି ହୋଇଗଲା । ସେ ପ୍ରାୟ ପାଞ୍ଚ-ଛଅ ଲକ୍ଷ ଟଙ୍କା ରୋଜଗାର କରି ବାପାଙ୍କୁ ଦେଖାଇଦେଲେ । ଏପରି ଉଇଣ୍ଡ୍ ଫଲ୍ ଗେନ୍‌ର କୌଶଳ ପ୍ରାୟ ଗୋଟିଏ ପ୍ରକାରର । କଣ୍ଟ୍ରାକ୍ଟ ନିଅନ୍ତି । କାମ କରନ୍ତିନି । ଧରାଧରି କରି ସରକାରଙ୍କ ଖିଲାପ ଦେଖାନ୍ତି । ଆରବିଟ୍ରେସନ୍ ଜରିଆରେ ଆୱାର୍ଡ ପାଇଯାଆନ୍ତି । ବାପା ସତ୍ୟ ଦେଖୁଥା'ନ୍ତି । ସରକାର ପୁଣି ଏମିତି ! ବିଶ୍ୱାସ ହେଉ ନ ଥାଏ ତାଙ୍କର । ଖୁସୀ ହୋଇ ପାରୁ ନ ଥା'ନ୍ତି । ପ୍ରମଥେଶ ଥରେ ବାପାଙ୍କୁ ବୁଝାଇଦେଲେ, ''ପେଟ ପୋଷ ନାହିଁ ଦୋଷ ।''

''ପେଟ ପୋଷ ? ଏଇଆକୁ କହନ୍ତି ? ହଇରେ ପଟ୍‌ଲୁ, ନିତେଇ ପାଲ ଯେତିକି କରିଛି ତୋ ପରେ ପାଞ୍ଚ ପୁରୁଷ ବସି ଖାଇଲେ ସରିବ କିରେ ? ପୂର୍ବ ପାକିସ୍ଥାନ ଛାଡ଼ିଲାବେଳେ ବାପା ମୋର କ'ଣ ସାଙ୍ଗରେ ଆଣିଥିଲା ରେ ? ହିଂସାର ନିଆଁ ଭିତରୁ ସେ ଆସିଥିଲା ବିଭୀଷିକାର ଅସଭ୍ୟ ସ୍ମୃତି ଧରି । ତୁ ଯେଉଁ 'ପେଟ ପୋଷ' କଥା କହୁଛୁ ସେ ଅବସ୍ଥା ଆଗେ ତାକୁ କଳଙ୍କିତ କରିଥାନ୍ତା । ମୋର ଭାଗ୍ୟ ସେ ମୋର ବାବା, ମୋର ଦୁର୍ଭାଗ୍ୟ ମୁଁ ତୋର ବାବା ।''

ସମସାମୟିକଭାବେ ପଲିମର ଉଦ୍‌ଭାବନଯୋଗୁ କଲିକତାର ଝୋଟବଜାର ମାନ୍ଦା ହେବାକୁ ଲାଗିଥାଏ । ହରିଦାସବାବୁଙ୍କ ବ୍ୟବସାୟ ବି । ଜୀବନର ସବୁ ନିପୁଣ କାରିଗରୀ ଜାଣିଥିବା ପ୍ରତାପୀ ସମ୍ରାଟ ଗଣ ଅୟସ, ଅଭୟର ସମସ୍ତ ପ୍ରଲେପ ନିଜ ଦେହରେ ବୋଳି ହୋଇ ମଧ୍ୟ ଚନ୍ଦ୍ରହାସର ଖଡ଼୍‌ଗ ହାତରେ ଥାଇ ବି କାହିଁକି ନିଥର

ହୋଇପଡ଼ନ୍ତି ? ସବୁଠାରୁ ବଡ଼ କାରଣଟି ହେଲା, ବୟସ । ସେ ଅହରହ କହୁଥାଏ: ହେ ମହାତ୍ମା, ହେ ପ୍ରମତ୍ତ, ହେ ଦୁର୍ନିବାର ! ଯତାତ୍ମା ସାଜ । ରଫା ହୋଇଯା' । କାନ୍ଥ ଖାଲି ନ ହେଲେ ନୂଆ କ୍ୟାଲେଣ୍ଡର ଟଙ୍ଗା ହେବ କେଉଁଠି ?

ହରିଦାସ ବାବୁଙ୍କ ନମନୀୟ ମନ ମାନସିକ ସଂଘାତର ଏହି ଦନ୍ତାଘାତକୁ ସହି ପାରି ନ ଥିବ ବୋଲି ଆମେ ଅନୁମାନ କରିପାରୁଛୁ । ପରବର୍ତ୍ତୀ ଘଟଣାବଳୀ ଜାଣିଥିବାରୁ ସବୁ କଥାର ସମନ୍ୱୟ ଅନୁମାନ କରିହେଉଛି । ନିର୍ଭରଶୀଳ ଗୁରୁଜନମାନଙ୍କ ଉପରେ ମାନସିକ ଅତ୍ୟାଚାର କରାଯାଇ ସୁଦ୍ଧା ନିଜ ଶିଷ୍ଟପଣର ପାଟକୁଅ ନ ହଲିବା ମୋଟେ ବିଚିତ୍ର ନୁହେଁ । ଅନେକ ଦୂରଦୃଷ୍ଟି ସହ ବାବୁ ପ୍ରମଥେଶ ବାପାଙ୍କୁ ଗୋଟିଏ ପ୍ରସ୍ତାବ ଦେଲେ । ଗୋଟିଏ ମନରେ ଅନେକ ସ୍ୱପ୍ନ । ଆଉ ଗୋଟିଏ ମନରେ ଅକୁହା ଆତଙ୍କ ।

ପ୍ରସ୍ତାବଟି ଥିଲା, ନଈରେ ଯେଉଁ ପୋଲ ହେବ, ଛୋଟ କଥା ନୁହେଁ । ଦୁଇଟା ବିରାଟ ଭୂଖଣ୍ଡ ଯୋଡ଼ି ହୋଇଯିବ । ଆଉ ବର୍ଷ ତିନି ଚାରିଟା ଭିତରେ ତାହା ହିଁ ହେବ ଜିଲ୍ଲାର ସବୁଠୁଁ ବଡ଼ ରାସ୍ତା । ରାସ୍ତାଟି ଯିବ ସମାଧି ବଗିଚା ଛୁଇଁ ପଶ୍ଚିମ ପଟେ । ସେ ସେଠାରେ ଗୋଟିଏ କମର୍ସିଆଲ୍ କମ୍ପ୍ଲେକ୍ସ୍ କରିବେ । ସେ ଯୁଗରେ ବି ସେ ଆର୍କିଟେକ୍ଟ୍ ବନ୍ଦୋବସ୍ତ କରିଥିଲେ ।

ଅତି ମାର୍ଜିତ, ଲୋଭନୀୟଭାବେ ସେ ଯେତେ ଥର ପ୍ରସ୍ତାବ ଶୁଣୁଥା'ନ୍ତି, ତାଙ୍କ ଗହନ ମନ ଯେତିକି ଦୋହଲି ଯାଉଥାଏ । ମୁରବିର କର୍ତ୍ତୃତ୍ୱ ସେ ଛାଡୁ ନ ଥା'ନ୍ତି ।

ସେ ପୋଲ ଅବଶ୍ୟ କଦାପି ହେଲା ନାହିଁ । ପ୍ରାୟ ଚାଳିଶ ବର୍ଷ ପରେ ସେଇ ନଈରେ ପୋଲ ହେଲା, ଅନ୍ୟତ୍ର । ମାତ୍ର ପୂର୍ବ ପୋଲପାଇଁ ପ୍ରତିଶ୍ରୁତିର ପାଦଟୀକା ହିଁ ଆମ ଏହି କାହାଣୀ । ହରିଦାସ ପାଲଙ୍କ ସବୁ ଯୁକ୍ତି ପୁଅ ପାଖରେ ପରାସ୍ତ ହେବା ପରେ ସେ ଶେଷ କଥା କହିଲେ । ମୋ ବାବାର ସମାଧି, ମୁଁ ଛାଡ଼ିପାରିବିନି । ଫୁଲର ମାୟା । ମନର ଏଇ ଛୋଟ ଗୋପନ ଅଞ୍ଚଳଟି ସେ କାହାରିକୁ ଦେଖିବାକୁ ଦେଇ ନାହାନ୍ତି ।

''ସମାଧି ଚମତ୍କାର ହୋଇଛି । କିନ୍ତୁ ଏବେ ସେଇଟା ଜଙ୍ଗଲରେ ଥିବା ପରି ଲାଗୁନି କି ?''

ଅସଲ କ୍ରୋଧ ତାଙ୍କର ଅନ୍ୟତ୍ର । ହରିଦାସ ବାବୁ କହିଲେ, ''କଥାବାର୍ତ୍ତା ମାର୍ଜିତଭାବେ କରି ଶିଖ । ମୋ ଜୀବଦ୍ଦଶାରେ ବାବାଙ୍କ ସମାଧି 'ସେଇଟା' ହୋଇ ନପାରେ ।''

ବହୁ ତର୍କ ହେଲା । କିନ୍ତୁ ମନ ଏପରି ଏକ ବ୍ୟବସ୍ଥା, ଯାହା ଇଚ୍ଛାକୁ ଥରେ ଚଉହଦିରେ ରଖିଲେ ତର୍କଠାରୁ ଦୂରେଇ ରହେ ।

''ବାବା, ଆପଣ ରାଗୁଛନ୍ତି । ମୋର ସବୁ ଚିନ୍ତା ସେଇ ସମାଧିସ୍ଥଳର ଶୋଭା ପାଇଁ । ଆପଣ ଥରେ ଯଦି କହି ଦେବେ ଯେ ସମାଧିର ସ୍ମୃତି କେବଳ ଆପଣଙ୍କର ଓ ମୁଁ ସେଥିରେ କେହି ନୁହେଁ, ମୁଁ ସବୁ ଯୋଜନା ବନ୍ଦ କରିଦେବି ।''

ଏହା ପରେ ସବୁ କଥା ଶୁଣିବାକୁ ହରିଦାସ ବାବୁ ନୈତିକଭାବେ ବାଧ ହୋଇପଡ଼ିଲେ । କାରଣ ସେ କଦାପି ନିତେଇ ପାଲଙ୍କ ସ୍ମୃତିର ଶେଷ ପାହାଚ ହୋଇପାରିବେ ନାହିଁ । ଯଦି ସେ ତାହା କରନ୍ତି, ତାଙ୍କୁ ଲାଗିଲା, ମା'-ହାରାଦୀ-ବିଷ୍ଣୁଦା'ଙ୍କୁ ହତ୍ୟା କରିଥିବା ଜଲ୍ଲାଦମାନଙ୍କ ପରି ସେ ନିତେଇପାଲଙ୍କୁ ମଧ ହତ୍ୟା କରୁଛନ୍ତି । କୁଳପାଇଁ ସ୍ମୃତିର ପ୍ରବହମାନ ଧାରାକୁ ଅଟକାଇବାକୁ ସେ କିଏ ?

ପ୍ରମଥେଶ ନିଜର ଯୋଜନା କହିଲେ । ବାପା ଶୁଣୁଥା'ନ୍ତି । ମନରେ ନୁହେଁ, କାନରେ । ଗୋଟିଏ ପରେ ଗୋଟିଏ ନୂଆ ନୂଆ ଆଶଙ୍କା ତାଙ୍କ ମନରେ ଉପୁଜୁ ଥାଏ । କାରଣ ସେ ଯାହା ଶୁଣୁଥା'ନ୍ତି, କୌଣସି ପ୍ରସ୍ତାବ ତାଙ୍କ ସ୍ଥିତ ଇଚ୍ଛାର ବିକଳ୍ପ ନୁହେଁ । ସେ ଅନୁମାନ କରୁଥିଲେ ଯେ କୃତିପାଇଁ ଅନେକ ମତ୍ତପ୍ରିୟ ହୁଅନ୍ତି, ତା' ତଳେ ଥିବା ହୃଦୟପାଇଁ ନୁହେଁ । ଅନେକ ହାରର ମୂଲ୍ୟ ଜାଣନ୍ତି, ଗଳାର ମୂଲ୍ୟ ଅନୁମାନ କରିପାରନ୍ତି ନାହିଁ । ବଗିଚା ତ ନିଶ୍ଚୟ ଭାଙ୍ଗିଯିବ, ହେଲେ ସେ ଏତେ ଠାକୁର-ଠାକୁରାଣୀଙ୍କପାଇଁ ଫୁଲ ଆଣିବେ କେଉଁଠୁ ? ଆଦୌ ଦେଖି ନ ଥିବା ଦେବାଦେବୀମାନଙ୍କ ଶ୍ରୀହୀନ ରୂପ ଏଣିକି ଖାଲି ତାଙ୍କୁ ଦେଖାଗଲା । ସେ ଆଉଟୁପାଉଟୁ ହେଲେ । ମା'-ବାବା-ହାରାଦୀ- ବିଷ୍ଣୁଦା' ଘୂରି ଘୂରି ମନକୁ ଆସୁଥା'ନ୍ତି । ବଗିଚାରେ ଫୁଲ ନାହିଁ, ମନରେ ସରାଗ ନାହିଁ ।

ତଥାପି, ସେ ପଟଲୁକୁ ଆବେଦନ କରିବେ ? ଛି ଛି ଛି ।

ରଫିକ୍‌ଚାଚା, ହରିଦାସ ବାବୁ ଏଇ କଥା ଗପ ହୁଅନ୍ତି । ଯୁଦ୍ଧରୁ ପଳାତକ ରଥର ସାରଥି ପରି ।

''ବାବା, ଆଗାମୀ ଅକ୍ଷୟ ତୃତୀୟାରେ ନିର୍ମାଣର ଶୁଭ ଦେବେ ଆପଣ ।''

''ନା । ବୋହୂ ମା' କଳସ ଧରିବା ବିଧି । ମୁଁ ବିପତ୍ନୀକ । ତୁମେ କର୍ତ୍ତା ହୁଅ ।''

ଡଙ୍ଗାରେ ବୁହାହୋଇ ବଡ଼ ବଡ଼ ମେସିନ ସମାଧି ବଗିଚାରେ ପହଞ୍ଚିଲା । ଏକଦା ଯେଉଁମାନେ ବଗିଚାର ଗୌରବ କହୁଥିଲେ ଏବେ ସେମାନେ ନିର୍ମାଣର ଗୌରବ ବି କହିଲେ । ହରିଦାସ ବାବୁ ଥରକପାଇଁ ବି ସେଠାକୁ ଯାଇ ନାହାନ୍ତି । ଏଣିକି ସେ ରଫିକ୍‌ଚାଚାଙ୍କ ମେଜିଆ ଉପରେ ବସନ୍ତି, ଗପସପ ହୁଅନ୍ତି ।

ହୋଇପାରେ ସଂଯୋଗ, ନିର୍ମାଣର ଆବଶ୍ୟକତାପାଇଁ ସମାଧିକୁ ଘେରି ରହିଥିବା ରଜନୀଗନ୍ଧା ଗଛଗୁଡ଼ିକ ଯେଉଁଦିନ ଉଜାଡ଼ି ଦିଆଗଲା, ସେଇଦିନ ହରିଦାସ ପାଲ ଛାତିରେ କଷ୍ଟ ପାଇଲେ । ବୋହୂ ଶୁଣ୍ଠିଗୁଣ୍ଡ, ଜୁଆଣିଅର୍କ ଆଦି ନେଇ ଘରୋଇ ଚିକିତ୍ସା କଲେ । ପରେ ହୋମିଓପାଥି ଡାକ୍ତର ସୁଧାକର ବାବୁ ଆସିଲେ । ଖବରପାଇ ପ୍ରମଥେଶ ବି । କିନ୍ତୁ, ବୁଦ୍‌ ବୁଦ୍‌ ଫାଟିଗଲା । ସେ ଆଉ ନ ଥିଲେ ।

ଏଇ ଖବର ଅଞ୍ଚଳଟାସାରା ବିଜୁଳି ବେଗରେ ଖେଳିଗଲା । ତାଙ୍କ ଦାଣ୍ଡରେ ସାତ ଗାଁ ଲୋକେ ରୁଣ୍ଡ । ବାରିହେଲା ପରି ଜଣେ ଦେଖାଯାଉ ନ ଥା'ନ୍ତି । ରଫିକ୍ ଚାଚା ।

ସେ ଖବରପାଇ ବାୟାଟିଏ ପରି କେତେ ଜାଗା ବୁଲିଛନ୍ତି ରଜନୀଗନ୍ଧାର ମାଳଟିଏପାଇଁ । ଜୀବନଟା ସାରା ସବୁ ବାତ୍ୟାର ଧଡ଼ସକୁ ଏଡ଼େଇ ମରୁଭୂମିରେ ଉଦ୍ୟାନ ତିଆରି କରି ପାରିଥିବା ହରିଦାସ ପାଲ ପରି ଅଣ-ନେତା, ଅଣ-ହାକିମ, ଅଣ-ଅସାଧୁ ବ୍ୟାପାରୀଟାଏ ମୃତ୍ୟୁ ସହ ନିଜେ ଫୁଲଟିଏ ହୋଇ ସାରିଲାଣି । ଅଥଚ ବିନମ୍ର କୃତଜ୍ଞତାରେ ମୁଁ ତାଙ୍କପାଇଁ ଫୁଲମାଳଟିଏ ପାଉ ନାହିଁ, ଏହା ହିଁ ଥିଲା ରଫିକ୍‌ଚାଚାଙ୍କ ଅବଶୋଷ ।

ଖାଲି ହାତରେ ଫେରି ସେ ମେଲଣ ପଡ଼ିଆ ଚଉଛକିରେ ପହଞ୍ଚିଲେ । ବଡ଼ ଲୋକ ଘର ଶବ ଆସୁଥାଏ ।



# ସ୍ୱୟଂବର

ଜେମା ଅନେକ ଦିନୁଁ ଉଦାସ ରହୁଛନ୍ତି । ଏଇ ଗୋଟିଏ କଥା ବାରମ୍ବାର ମୁଦୁସୁଲୀମାନେ କହୁଥା'ନ୍ତି । ରାଣୀଙ୍କର ପରତେ ହେଉନଥାଏ । ଦୁଇଟି କାରଣ ଯୋଗୁ । ମା' ମନ । କେଳି କଦମ୍ବ ପରି ଯେତେ ପୁଷ୍ପିତ ଇଚ୍ଛାମାନ ସେ ବୃକ୍ଷରେ ଫୁଟୁଥିଲେ ବି ତହିଁରୁ ସମୁଦାୟ ଆଶଙ୍କା ଫେଡିହୁଏ ନାହିଁ । ଆଶା-ଆଶଙ୍କାର ଏମନ୍ତ ଯୁଗଳବନ୍ଧନୀ ନାଗନାଗୁଣୀଙ୍କ ରତିକ୍ରୀଡ଼ା ପରି ଦେଖିବାକୁ ଯେମିତି କୌତୁକ ଲାଗେ, ସେମିତି ଭୟାନକ ଲାଗେ ମଧ । ଅନ୍ୟ ଏକ ବିଚାର ଠାରୁ ମା' ମନ ଦୂରକୁ ଯାଇ ପାରୁ ନ ଥାଏ । ଉଡ଼ନ୍ତା ଚଢେଇକୁ ନୀଳ ଆକାଶ ସହିତ ମିଶାଇ ଆମେ କାହିଁକି ଭାବୁ ବା ପୂନେଇଁ ଜହ୍ନ କାହିଁକି ପ୍ରୀତିପର୍ଣ୍ଣାର ମୁହଁଟି ପରି ଆମକୁ ଲାଗେ, ଏଗୁଡ଼ିକ ଭାବର ପ୍ରଶ୍ନ, ଯୁକ୍ତିର ସମୀକ୍ଷାକୁ ଅପେକ୍ଷା କରେ ନାହିଁ । ମହିଷୀ ସମ୍ରାଟଙ୍କ ପରାକ୍ରମ ଜାଣିଥା'ନ୍ତି । ପ୍ରଭୁ ଯଦି ଇଚ୍ଛା କରନ୍ତି, ଏ ମହୀରେ ଅସାଧ କ'ଣ ?

ତଥାପି ସେ ନିଜ ପ୍ରତ୍ୟୟକୁ ପରଖୁଥା'ନ୍ତି ବାରମ୍ବାର । ସୂର୍ଯ୍ୟ ସାମ୍ନାରେ ବର୍ଷା ହେଉଥିବ, ଅଥଚ ଇନ୍ଦ୍ରଧନୁକୁ ଲୁଚାଇପାରିବ କିଏ ? ହୃଦୟର କେତେକ ଲଳିତ ପ୍ରସଙ୍ଗ ଓ ସଂଶୟକୁ ଛାଡ଼ି ସବୁ ଚିଜର ବଟକରା ଯୋଗ୍ୟ ଓଜନ ଅଛି । କିନ୍ତୁ ମଣିଷ ଯେତେବେଳେ ନିଜ ମନକୁ ନିଆରା ନିଆରା ଭାଗ କରି ତଉଲିବାକୁ ଚେଷ୍ଟାକରେ ସେ ସାରା ଜୀବନଟା ଦରାଣ୍ଡିଲେ ବି ସେଥିପାଇଁ ତରାଜୁଟିଏ ପାଏ ନାହିଁ । ରାଣୀଙ୍କ ପାଇଁ ଏହା ହିଁ ଥିଲା ସଙ୍କଟ ।

କ୍ୱଚିତ୍ ସାକ୍ଷାତରେ ମହାରାଜାଙ୍କ ସୁଆଗକୁ ପାଟମହାଦେଈ ଅନୁଶୀଳନ କରନ୍ତି । ନିଜେ ସାହସ ସଞ୍ଚୟ କରନ୍ତି । ମଣ୍ଡପରେ ବସାଇ ରୋହିଣୀଲତାର ଆଢୁଆଳରୁ ସେ ତାଙ୍କୁ ଆକାଶରେ ତାରା ଦେଖାନ୍ତି, ଜହ୍ନ ଦେଖାନ୍ତି । ଉଦାସ ଆଖିରେ ବଉଦମାଳ ଦେଖନ୍ତି । ହଂସଗୀତି ଶୁଣାନ୍ତି । ପ୍ରସକ୍ତ ଭାବେ ପ୍ରୀତିପୂର୍ଣ୍ଣ ପ୍ରସଙ୍ଗମାନ ହିଁ କୁହନ୍ତି କେବଳ । ଅସଲ କଥାଟି ଆରମ୍ଭ କରନ୍ତେ, ଶୁଣନ୍ତି ଭୁରୁଡ଼ିଟାଏ ।

ପ୍ରଭୁ ମଣୋହିକୁ ବିଜେ କରନ୍ତି । ତା'ପରେ ଲୋଟିଯାଆନ୍ତି ସେ ହଂସୁଳିତୂଳିର ଗଜଦନ୍ତ ପଲଙ୍କ ଉପରେ । ଦ୍ୟୁତିତ ଦାସୀ ସେବା ଓ ଅର୍ଚ୍ଚନାର ନିଯୋଗ ଆରମ୍ଭ ହୁଏ । ଏକୁ ଆରେକ ବଳି ସୁନ୍ଦରୀ ଦାସୀମାନଙ୍କ ଭିତରୁ କେହି ମୟୂର ଚନ୍ଦ୍ରିକାରେ

ପ୍ରଭୁଙ୍କ ପାଦ ଆଉଁଶୁଥାଏ ତ ଆଉ କିଏ କମନୀୟ କରରେ ପଦ୍ମ ପକ୍ଷ୍ମ ଧରି ମୁକୁଳା ବୁକୁକୁ ବିଞ୍ଚୁଥାଏ । କାହା ହାତରେ ହଲୁଥାଏ ଆଲଟ ଚାମର ତ ଆଉ କେଉଁ ବିମ୍ବାଧାରା ପ୍ରଭୁଙ୍କ ଅବୟବର ଉଲ୍ଲାସଯୋଗ୍ୟ ଅଞ୍ଚଳରେ କୋମଳ ଚାପ ଦେଇ ନିଜେ ରୋମାଞ୍ଚିତ ହେବାପରି ଜଣାପଡୁଥା'ନ୍ତି ।

ଲାଗୁଥାଏ, ଇସ୍ ଏତେ ଗୁଡ଼ାଏ ବଜ୍ର, ଗୋଟାଏ ମେଦିନୀ । ତଥାପି ହଲୁନି । ମାର୍ତ୍ତଣ୍ଡ, ମହାମେରୁ । ବେଗ ଓ ସ୍ଥୈର୍ଯ୍ୟର ପ୍ରତିଯୋଗିତା ।

କେୟୂର-କଙ୍କଣର ଋମ୍‌ଝୁମ୍, ଆନ୍ଦୋଳିତ ତନୁ ଯୋଗୁ ଗୋଟିଏ କୁଚ-କଳସରେ ସ୍ଥିର ରହି ନ ପାରୁଥିବା କେରି କେରି ବକ୍ଷହାରଗୁଡ଼ିକର ଝଙ୍କାରିତ ବିବିଧ ଶବ୍ଦ, ଝୀନପତନି ତଳୁ ଆହୁରି ପ୍ରଲୁବ୍ଧ ବା ଲୁଚିବାଠାରୁ ବେଶୀ ଦେଖାଯାଉଥିବା ରତିଦେବୀମାନଙ୍କ ଯୌନମତ୍ତ ଅଙ୍ଗରେଖା, ସ୍ତୋକନମ୍ର ବକ୍ଷରାଜି ବା ନୀବିବନ୍ଧରେ କୌତୁକ କିଙ୍କିଣୀଗୁଡ଼ିକର କ୍ୱଣିତ କ୍ରୀଡ଼ା ସତ୍ତ୍ୱେ ପ୍ରଭୁ ଶୋଇପଡ଼ନ୍ତି । ସ୍ତବ୍ଧ ଉଆସ ଆହୁରି ନିଃଶବ୍ଦ ହୋଇପଡେ । ଯାମିନୀ ବିତିଯାଏ । ଆଗାମୀ ସୂର୍ଯ୍ୟୋଦୟ ପର୍ଯ୍ୟନ୍ତ ନିମୀଳିତ କ୍ଳାନ୍ତ ମଦାଳସା ପରି ରାଣୀହଂସପୁର ରହି ରହି କେତେବେଳେ କେମିତି କଡ଼ ଲେଉଟାଉଥାଏ କେବଳ ।

ଏଣେ ଜୀବନ-ଗଗନରେ ଚନ୍ଦ୍ରପରି ବଢୁଥିବା ଏବଂ ଯୌବନର ଯାବତ୍ ବିନ୍ୟାସରେ ବର୍ତ୍ତୁଳ ବର୍ଣ୍ଣ-ବିଭା ପ୍ରକଟିତ ରାଜକନ୍ୟା ସତେ ଯେମିତି ଠିଆହୋଇ ରହିଥା'ନ୍ତି ଗୋଟିଏ ଅଭେଦ୍ୟ ଅନ୍ତରୀପରେ । ଏକାକିନୀ । ନୌକା ବା ବଡାସ, କିଏ ଆସିବ ଜଣା ନାହିଁ । ଏମିତି ଏମିତି ତାଙ୍କ ଯୌବନ ବି ଦିନେ ଅମାବାସ୍ୟା ଭେଟିବ । ଏଇ କଥା ଭାବିଲାବେଳକୁ ରାଣୀଙ୍କ ପ୍ରାଣର ମନ୍ଦାକ୍ରାନ୍ତାମାନେ ଛନ୍ଦହରା ହୋଇଯାଉଥା'ନ୍ତି । ବାପମାନଙ୍କ ମନ କେମିତି କେଜାଣି, ରାଣୀ ହେଲେ ବି ତାଙ୍କ ମନଟି ମା'ର ।

ମହାରାଜା ଅବଶ୍ୟ କେତେଥର କହିଛନ୍ତି, "ଧ୍ୟାତ୍, ଆମ ଜେମା ତ ପିଲାଟେ । ବେଳ ଆସୁ । ମୁଁ ତା'ର ସ୍ୱୟମ୍ବର କରିବି । ଜଗତ ଦେଖିବ ।" ରାଣୀ ମୁହଁ ଖୋଲି କିଛି କହନ୍ତି ନାହିଁ । ଉପାୟ ନ ଥାଏ । ଲୋତକୁଥିବା ଚିଜଟିକୁ ଆଢୁଆଳ କରି ଆଖି ସାମ୍ନାରୁ ଲୁଚାଇଦେଲେ ମନର ଡହକ ବଢିଯିବା ପରି, ଭାଷା ନକହିପାରୁଥିବା ସବୁ ଓଠର ସ୍ପନ୍ଦନ ଭାବନାର ଉଜାଣି ଢେଉ ଗୁଡ଼ିକୁ ବଢାଇଚାଲେ କେବଳ । ରାଣୀ ଭାବୁଥା'ନ୍ତି, ହଁ ଜେମାଙ୍କୁ ଯଦି ସବୁଦିନେ ଛୁଆଟିଏ କରି ରଖା ନଯାଏ, ତୁମେ ଯୁବକପଣର ଝାଞ୍ଜ ପିଟିବ କେମିତି ? ତୁମ ଯୁବ-ପ୍ରମତ୍ତ ବଳୟଟିର ସୁରକ୍ଷାନିମନ୍ତେ ଜେମାଙ୍କ ବୟସ ଆହୁରି କମି ଯଦି ସେ ଶୈଶବକୁ ଫେରିବା ସମ୍ଭବ

ହୋଇପାରନ୍ତା, ପାଟପଲଟଣ ନେଇ କେତେ ସ୍ୱୟମ୍ବରକୁ ଏବେ ବି ତୁମେ ନ ଯାଉ ଥାଆନ୍ତ, ହେ ମଣିମା ! କିନ୍ତୁ ସେ ହସି ହସି କହନ୍ତି,'' ମୋ ପ୍ରଭୁ ତ୍ରିକାଳରୁ କ'ଣ ନ ଜାଣିଛନ୍ତି, ତ୍ରିଭୁବନରୁ କ'ଣ ନ ଦେଖିଛନ୍ତି ଯେ । ତାଙ୍କ ମନୀଷା ନିକଟରେ ଏ ମୂଢ଼ା କି ବଚନ କହିବ ଅବା ।''

ଦିନଗୁଡ଼ାକ ଖସିଯାଉଥାଏ ନିର୍ମୋକ ପରି । ନୂଆ ସାପଟାଏ ବାହାରୁଥାଏ । ସବୁବେଳେ ଫଁ-ଫଁ ନୂଆ ପରି ଶୁଭୁଥାଏ । ଭୟ ଏକ ବିନୀତ ବରକନ୍ଦାଜ । କେବଳ ଆଦେଶ ମାନେ ।

ଥରେ ସୂର୍ଯ୍ୟାସ୍ତକୁ ଅନେଇ ରାଣୀ ବସିଥା'ନ୍ତି ନଅର ଛାତରେ । ଲଲାମ, ମଥାମଣି ଆଦି ଜୁଡ଼ାରେ ଛନ୍ଦି ହୋଇଯାଇଥା'ନ୍ତି । କୌଣସି ଜଣେ ଦାସୀ ଦୌଡ଼ି ଦୌଡ଼ି ଆସିଲା । ''ମଣିମା ବିଜେ କରୁଛନ୍ତି ।'' ତ୍ରସ୍ତ ଏଇ ସମ୍ବାଦରେ ନଅର ଉପରଟା ହଲିଗଲା । ଅଳସ ବେଢଙ୍ଗର ସବୁ ନର୍ମଠ ଝୁମୁକାମାନେ ଏମିତି ତ ଚିକ୍‌ଚିକ୍ କରୁଥିଲେ, ଏବେ ସା-ରେ-ଗା-ମା ର ତାଳ ଭିତରକୁ ପଶିଗଲେ । ରାଣୀ ଆଉରି ଖୋଜୁଥା'ନ୍ତି, ଘେରା ଲତାକୁଞ୍ଜର ହେ ସବୁ ଫୁଲମାନେ, ଏତିକିବେଳେ ତୁମେ ସବୁ ବେଶି ଫୁଟ, ବେଶି ହସ । ଆଶ୍ଚର୍ଯ୍ୟ, ତାହା ବି ହେଲା । ସତକୁସତ ଅପରାହ୍ନର କ୍ଳାନ୍ତ ଝାଉଁଳା ଫୁଲଗୁଡ଼ାକ ସତେଜ ଦେଖାଗଲେ, ହସିଲେ । ଅସଲରେ ରାଣୀଙ୍କ ମନ-ମୟୂରୀ ହିଁ ନାଚୁଥାଏ ।

ଅଇନା କ'ଣ ସୁନ୍ଦର କି ?

ଦାସୀମାନଙ୍କ ଗହଣରେ ମହାରାଜ ବିଜେ କଲେ । ଏଣିକି ସବୁ ଦାସୀ ଅନେଇ ରହିଲେ ଇସାରାକୁ । କୁର୍ନିସ କରି ପ୍ରସ୍ଥାନ କରିବେ । ରାଜା ଗମ୍ଭୀର ଦେଖାଯାଉ ନ ଥିଲେ, ମାତ୍ର ଅବକାଶ ସ୍ୱାଭାବିକଭାବେ ନିଝୁମ ହୋଇ ପଡିଥାଏ ।

''ଆମ୍ଭେ ଦୂତଠାରୁ ସମ୍ବାଦ ପାଇଛୁ, ଜେମା କୁଆଡ଼େ ବିରସ ରହୁଛନ୍ତି ?''

ରାଣୀଙ୍କ ପଞ୍ଜରା ଭିତରେ ଥିବା ଅଳସ କପୋତଗୁଡ଼ାକ ଡେଣା ଫଡ଼୍‌ଫଡ଼୍ କଲେ । ନିଜ ମନକୁ ଲୁଚାଇ ସେ କହିଲେ, ''ନା ପ୍ରଭୁ, ଜେମାଙ୍କ ନିଜ ସେବାରେ ଅଗୁରୁ-ଅତର ଯେମିତି ଯାଉଥିଲା ଏବେ ବି ସେମିତି ଯାଉଛି । ଜେମା ନୌବିହାର କରୁଛନ୍ତି । ସ୍ନାନପାଇଁ ଗୋଲାପ ଜଳର ଅଳିଂଜର ସଂଖ୍ୟା ବଢ଼ିଛି ସିନା, କମି ନାହିଁ । ରଜନୀଗନ୍ଧାର ସେତିକି ସ୍ତବକ ଏବେ ବି ଯାଉଛି, ଯେତିକି ଯାଉଥିଲା । ଆପଣଙ୍କର ଏ ଅଭାଗିନୀ ଦାସୀ ଗତ ମାସ ଚନ୍ଦ୍ରକ୍ଷୟ ଦିନ ଜେମାଙ୍କୁ ସ୍ୱଚକ୍ଷୁରେ ଦେଖିଛି ।''

ମଣିମାଙ୍କ ସଂତପ୍ତ ପିତୃପ୍ରାଣ ଆନନ୍ଦ ଲଭିଲା ।

ତେଣେ, ଜେମାଙ୍କ ଅଙ୍ଗ ତ ନିଶ୍ଚୟ ଲାବଣ୍ୟମୟୀ, ହେଲେ ମନ ହେଲାଣି କଙ୍କାଳ । ଦୁଇଟିରୁ ଗୋଟିଏ ଭୋକ ଯେ କେମିତିକା ସେ ମୋଟୁରୁ ଜାଣି ନ ଥା'ନ୍ତି, କିନ୍ତୁ ଆରଟିଯୋଗୁ ସେ କାଙ୍ଗାଳ । ବୁଭୁକ୍ଷୁ ଝାମ୍ପିପାରେ । ସେ ଶକ୍ତି ବି ତାଙ୍କର ନାହିଁ । ପାଦରେ ପରମ୍ପରାର ବେଡ଼ି । ଯେଉଁ ମନ ଅଳସରେ ବି ଅଳି କରୁଥାଏ, ହେ ତନ୍ଦ୍ରା, ମୋତେ ଟିକେ ସ୍ୱପ୍ନ ଦେ– ତାହା ବାସ୍ତବତାଠାରୁ ନିଜକୁ ଦୂରେଇ ରଖିବାର ପ୍ରତିଜ୍ଞା ଯୋଗୁ ନୁହେଁ– ନିକଟତର ହେବାର ପ୍ରବୃତ୍ତିଯୋଗୁ ।

ଗଣତନ୍ତ୍ରର ଅସହାୟ ଭୋଟରମାନଙ୍କ ପରି ଜେମା ବା ଅଧିକ ଆଉ କ'ଣ କରିପାରିଥାଆନ୍ତେ !

ତହଳ ଆଖିରେ ଖାଲି ଅନାନ୍ତି । କାହାକୁ ଦେଖୁଥା'ନ୍ତି ତ ଆଉ କାହା କଥା ଭାବୁଥା'ନ୍ତି । ତାଙ୍କ ସେବାରେ ଥିବା ଜଣେ ଦାସୀକୁ ଥରେ ସେ ପାଖକୁ ଡାକିଲେ । ଏକାନ୍ତରେ ପଚାରିଲେ, ''ଗଣ୍ଡରେ ତୋ'ର ଏ କେଉଁ ଚିହ୍ନ ଲୋ ? କଳାକାର କରିଚି ନା ଚିତ୍ରକାର ଆଙ୍କିଛି ?'' ସମବୟସୀ ଦାସୀ, କହୁକହୁ ସବୁ କଥା କହିଦେଲା । ସେହି କୁତୂହଳୀ ଚିହ୍ନଟି ଏଣିକି ତାଙ୍କୁ ନାଗଫଣାର କଠୋଉ ପରି ଦେଖାଗଲା । ସେ ଚିହିଁକି ଉଠିଲେ, ''ତୁ ଚରିତ୍ରହୀନା'' । ଦାସୀ କାବା । ମନେମନେ ସେ ଭାବୁଥାଏ – ପଦ୍ମତୋଳା ଜାଣିଥିଲେ ତୁମେ ବି ନାଗ ସାପକୁ ଆଉଁଶୁ ଥାଆନ୍ତ ଗୋ' । ଜଡ଼ କେବଳ ଜହର ନ ଥିବା ଜୀବନ କଥା ଚିନ୍ତା କରିପାରେ ।

ଦାସୀ ତଳକୁ ମୁହଁ ପୋତି ଠିଆ ହୋଇଥାଏ ଆତଙ୍କରେ । ନିଜ ଆତଙ୍କର ଆୟୁଷ କମ୍, ଏତିକି ମାତ୍ର ବିଶ୍ୱାସ ଥାଏ ତା'ର । ସେ ଜାଣିପାରୁଥାଏ, ଜେମାଙ୍କର ଏ ଔଦାସୀନ୍ୟ ବିରାଗ ନୁହେଁ – ବିଡ଼ମ୍ବନା । କଥିତ ପାପ-ଜ୍ଞାନ ପ୍ରଜ୍ଞା ନୁହେଁ – ପ୍ରତାରଣା । ତାଙ୍କ ଇଚ୍ଛା, ଚୋରାପଥ ଖୋଜିଖୋଜି, ଈର୍ଷାରେ ପରିଣତ ହୋଇଥିବା ଅସମ୍ଭବ ନୁହେଁ ।

ପରେପରେ ଦେଖାଗଲା, ଜେମା କେବଳ ସେଇ ଦାସୀଟିକୁ ଡାକନ୍ତି । ନିଭୃତ ସମୟ ଯୋଗାଡ଼ କରନ୍ତି । ଛାନ୍ଦ-ଚଉପଦୀ-ଶାସ୍ତ୍ର-ପୁରାଣର ନାନାଦି ଉଦାହରଣ ଦେଇ ତାକୁ ଗାଳି ଦିଅନ୍ତି । ଦାସୀ ବିଚାରୀ କରନ୍ତା କ'ଣ ? ଭୋଗଠାରୁ ବୈରାଗ୍ୟର ଦୂରତା ସେ ଜାଣିପାରୁଥାଏ । ଏ ପାପିନୀ ଦେହ ଠାରୁ ପବିତ୍ର ମନ କାହିଁକି ଦୂରଛଡ଼ା ହୋଇ ରହିବା କଥା, ତାହା ବି ସେ ବୁଝିପାରୁଥାଏ । ଅଥଚ ଭୁଲି ଯାଉଥାଏ ବାରମ୍ବାର । ଜେମା ଡକାଇଲେ, ତା'ର ପବିତ୍ରତା ମନେ ପଡ଼େ । ନଅରର ଯାବତ୍ ନିରାପତ୍ତା ସତ୍ତ୍ୱେ ତାକୁ ଭୟ ଲାଗେ । କିନ୍ତୁ ଅଭିସାରପାଇଁ ସେ ଅନ୍ଧାରକୁ ବାଛେ, ଶ୍ୱାପଦସଙ୍କୁଳ ଜଙ୍ଗଲକୁ ଯାଏ । ଭୟ କରେନି । ଦେହ ଓ ମନର ବ୍ୟବଧାନ କଥା

ଭାବେନି ବା ପବିତ୍ରତା କଥା ମନେ ପକାଏନି । ଏଣିକି କେବଳ ସେ ଦୁଇଟି ପ୍ରତିଷେଧ ମନେ ରଖିଥାଏ । ଦୃଶ୍ୟମାନ ଅଞ୍ଚଳରେ କଳାକାରଙ୍କୁ ଚିତ୍ର କରିବାକୁ ଦିଏ ନାହିଁ । ଜେମାଙ୍କ ସହିତ ପବିତ୍ରତାର ସହଜ ସୁଅରେ ସିଏ ବି ଏକା ବେଗରେ ବା ଟିକିଏ ଆଗୁଆ ହୋଇ ଭାସିଚାଲେ । ଟିକିଏ ଛଳନା ନ କରି କାହିଁକି ଯେ ସେ ସବୁ କଥା କହିପକାଇଲା, ସେଥିପାଇଁ ଅନୁତାପ କରୁଥାଏ ।

ଜେମା ଜାଣି ପାରୁଥାନ୍ତି, ଦାସୀ ଆଉ ମନ୍ଦ ପନ୍ଥା ଅନୁସରଣ କରୁ ନାହିଁ ।

ଦାସୀ ଆଶ୍ୱସ୍ତ ହେଉଥାଏ, ମନ୍ଦ ପନ୍ଥା ବିଷୟରେ ଜେମା କେବଳ ଶୁଣିଛନ୍ତି ସିନା, ଜାଣି ନାହାଁନ୍ତି । ତାଙ୍କର ଯଦି ସାମାନ୍ୟ ଅନୁଭୂତି ଥାଆନ୍ତା, ମୁଁ ସେବାରୁ ଅନ୍ତର ହେବା ତ ଅତି ଛୋଟିଆ କଥା, ମୁଣ୍ଡ କାଟ ହୋଇସାରନ୍ତାଣି । ହେ ପ୍ରଭୁ ତୁମେ ସିନା ବଡ଼ ବୋଲି ! କବରୀରେ ଶୁଖା ଘାସ ଦେଖି ସେ ତଥାପି ମଳୟକୁ ଦୁଷ୍ଟ କହୁଛନ୍ତି । ଛିଣ୍ଡା ପାଟ ଦେଖି, ଉଦ୍ୟାନର କଣ୍ଟାଝଟାରେ ତୁ କାଇଁ ବୁଲୁ ବୋଲି ମୋତେ ଗାଳି ଦେଉଛନ୍ତି । ସେତେବେଳେ ପାପ-ପାପ ବୋଲି ହୁରି •କରୁଥିବା ରାଜକନ୍ୟା ଏବେ ପାପର ବ୍ୟାଖ୍ୟା ଶୁଣିବାକୁ ଉତ୍କଣ୍ଠିତା । ପଝାଲ ଉଣ୍ଡୁଛନ୍ତି । ଅଥଚ ମୁଁ କହୁ ନାହିଁ ଯେ: ଅଳ୍ପ କେତେକ ପାପ ଅଛି ତହିଁରେ ବ୍ୟସ୍ତଥିବାବେଳେ ନିଜକୁ ପୁଣ୍ୟଠାରୁ ବି ପବିତ୍ର ଲାଗେ ଗୋ'... ! ଜୀବନର ମାୟା ଛାଡ଼ି ଏ କଥା ମୁଁ ତାଙ୍କୁ କେମିତି ବା କହିବି ? ମୋ ନାଁ କମଳା, ସେ ଖୁସି ହେଲେ ଡାକନ୍ତି 'କମ' । ସେଇଥିରୁ ମୁଁ ଜାଣିପାରେ ।

ଏମିତି ଏମିତି କେତେ ଋତୁ ବିତିଗଲା । ଗଡ଼ଖାଇରେ ଭୟାନକ କୁମ୍ଭୀର ଗୁଡ଼ାକ ଗୋଡ଼ାଗୋଡ଼ି ହେଉଥିଲେ । ଏବେ ସେମାନଙ୍କ ସହିତ ସାଲୁରୁବାଲୁରୁ ହୋଇ ଛୁଆଗୁଡ଼ା ବୁଲୁଛନ୍ତି । ସେମାନଙ୍କ ଭିତରୁ ସମସ୍ତେ ଦିନେ ନା ଦିନେ ଭୟାନକ ହେବେ । ଏବେ କିନ୍ତୁ ଖୁବ୍ କଉତୁକିଆ ଦେଖାଯାଉଛନ୍ତି । ଜେମା ଦେଖନ୍ତି, ଭୁଲି ଯାଆନ୍ତି ।

ତାଙ୍କ ପିତା, ରାଜାଧିରାଜ ତାଙ୍କପାଇଁ ସ୍ୱୟଂବର କରିବେ, ଏକଥା ସେ ବାରମ୍ବାର ଶୁଣିଥିଲେ । ନିଜ ଆଶା ମଣିଷକୁ ଯେମିତି ଉଦ୍ଦୀପିତଭାବେ ବଞ୍ଚାଇପାରେ ପୃଥିବୀର ସବୁ ବୈଦ୍ୟ, ସବୁ କବିରାଜ, ଖୋଦ ଅଶ୍ୱିନୀ କୁମାର ବି ସେତିକି ପାରନ୍ତି ନାହିଁ । କିନ୍ତୁ ଆଶା ପରି ଲଳିତ କଳ୍ପନା କେବଳ ନଅରରେ ବାସ କରେ । ଗଡ଼ଖାଇକୁ ଖାଲି ଅନାଏ • ସେଥିକୁ ଗଳିପଡ଼ିବାର ଆଶଙ୍କାରେ ସେ ହନ୍ତସନ୍ତ ବି ହେଉଥାଏ ।

ପଶ୍ଚିମୋତ୍ତର ରାଜ୍ୟ-ସୀମା ସୁରକ୍ଷିତ ରହିବାପାଇଁ ଜେମା ବୃଷକେତୁଙ୍କୁ ବିବାହ ହୁଅନ୍ତୁ, ବା ବୃଷକେତୁଙ୍କୁ କବଳିତ କରିବାକୁ ହେଲେ ରାଜ୍ୟର ଉତ୍ତର-ପୂର୍ବରେ ଥିବା ଦିବ୍ୟଗଡ଼ର ନରେଶଙ୍କୁ ଜାମାତା କରିବା ବିଧେୟ । ବିଳମ୍ବରେ ହେଉ ପଛେ,

ଏହିପରି ନାନାଦି ସମ୍ବାଦ ଅନ୍ତପୁରକୁ ଆସୁଥାଏ । ଜେମା ଶୁଣୁଥା'ନ୍ତି । ସ୍ୱୟଂବର ଗଲା କୁଆଡ଼େ ? ସେ ବାହା ହେବେ କାହାକୁ ? ଜେମାମାନଙ୍କ ଜୀବନପାଇଁ ଭୂଗୋଳ କେମିତି ନିର୍ଣ୍ଣାୟକ, ସେ ଶୁଣୁଥା'ନ୍ତି ଅଥଚ ବୁଝିପାରୁ ନ ଥାନ୍ତି । ଏତେ କଥା ଚାଲିଥାଏ ମାତ୍ର ଜେମାଙ୍କୁ କେହି ଆନୁଷ୍ଠାନିକ ଭାବେ ସମ୍ବାଦ ଦେଉ ନ ଥାନ୍ତି ।

ରାଜକନ୍ୟା ଏଥିପାଇଁ କ୍ରୋଧରେ ଜର୍ଜରିତ । ଗଣତନ୍ତ୍ରରେ ମୁକ୍ତ ସୂଚନାର ଅଧିକାର ଥାଇ ମଧ୍ୟ ନାଗରିକଗଣ ଆଲୋକ ଦେଖିବାକୁ ଇଚ୍ଛା କଲେ ସେଇ ଆଲୋକଦ୍ୱାରା ସୃଷ୍ଟ ନିଜ ଛାଇକୁ ଦେଖିବାକୁ ଯେମିତି ବାଧ୍ୟ ହେଉଥା'ନ୍ତି, ଜେମାଙ୍କ ଅବସ୍ଥା ସେଇଆ । ଜାଣନ୍ତି ସେ, ଆଲୋକ ଅଛି । ପଛ ପଟେ ଅଛି । ନ ହେଲେ ଛାଇ ଆସନ୍ତା କୁଆଡୁ ? ହେଲେ, ସେ ମୁହଁ ବୁଲେଇବେ କେମିତି ?

ମୁଦୁସୁଲୀ ବାଟେ ଜେମାଙ୍କ ଠାରୁ ବାରତା ଗଲା । ''ସମୟ ନିଅ । ମୁଁ ମହାରାଣୀଙ୍କୁ ନିଭୃତରେ ଭେଟିବି ।''

ଯେଉଁ ଅଳ୍ପ କେତେକ ଘଟଣାଯୋଗୁ ରାଣୀହଂସପୁର ହାଇ ମାରି ମାରି କଡ଼ ଲେଉଟାଏ, ଏ ସମ୍ବାଦ ସେମିତି ହୋଇଗଲା ।

ସମୟ ଆସଲା । ଜେମାଙ୍କୁ ପାଛୋଟି ନିଆଗଲା । ତାଙ୍କ ସାଙ୍ଗରେ ଯାଇଥିବା ସେଇ ଏକ ମାତ୍ର ଦାସୀ, ରହିଲା ବାହାରେ ।

ଶିଶୁଟିଏ ରାହା ଧରି କାନ୍ଦୁଥିବ ରୂପହୀନ ଇଚ୍ଛା ଓ ବ୍ୟାକରଣହୀନ ଶବ୍ଦ ସହ । ଦେଖା ନ ଯାଉ ପଛେ, ସେଇ ଶବ୍ଦ ସହିତ ମିଶି ଯଦି କିଛି ବିକଳ ପ୍ରବୋଧନା ଶୁଭୁଥାଏ, ଆଉ ସ୍ୱରଟି ମା'ର । ସେଇ ଶିଶୁଟି ବିକଳ ହୋଇ କାନ୍ଦୁଥିବ କିନ୍ତୁ ପ୍ରବୋଧନାପାଇଁ ଯେତେ ସ୍ପଷ୍ଟ ଭାବେ ଗୀତ-ବାକ୍ୟ-ଶବ୍ଦ ପ୍ରୟୋଗ ହେଲେ ବି ବିମାତାର ସ୍ୱର ବାରି ହୋଇପଡ଼େ । ଦୃଶ୍ୟମାନ ଭାବେ ବିମାତା କାନ୍ଦିଲେ ବି ମା' ହୁଏ ନାହିଁ, ମା' ରାଗୁଥିଲେ ବି ନିଜର ଲଳିତ ମନକୁ ସନ୍ତାନ ବିରୁଦ୍ଧରେ କୁହୁଡ଼ିଆ କରାଇ ପାରେନା ।

ଦାସୀ ବାହାରେ ଥାଇ ମଧ୍ୟ ମହାରାଣୀଙ୍କ ମାତୃତ୍ୱର ଭାଷାରୁ ସେମିତି କିଛି ଅନୁମାନ କରୁଥାଏ ।

ଜେମା ନିଜର ସର୍ତ୍ତ କହିଦେଲେ । ''ସ୍ୱୟମ୍ବର ନ ହଉ ପଛେ, ମୁଁ ଯେଉଁ ରାଜକୁମାରଙ୍କ କର ଧରିବି, ସେ ବୁଦ୍ଧିରେ ମୋ ଠାରୁ ଊଣା ହୋଇ ନ ଥିବେ; ତାଙ୍କ ଜୀବନରେ ମୋ ଭିନ୍ନ ମୋ ଜୀବଦ୍ଦଶା ଭିତରେ ଅନ୍ୟ କେହି ପତ୍ନୀ ବା ରକ୍ଷିତା ରହି ପାରିବେ ନାହିଁ; ଏବଂ, ସୌମ୍ୟ ବପୁ-ସମ୍ପନ୍ନ ବଜ୍ର ପରି ପରାକ୍ରମୀ ହୋଇଥିବେ ସିଏ ।''

ମା-ଝିଅ, ମହାରାଣୀ-ଜେମା ଉଭୟ ବୋଧହୁଏ ସେଇ ସମୟରେ ବୁଝିପାରୁ ନ ଥାନ୍ତି ଯେ ସେମାନେ ବୁଝିପାରୁ ନାହାନ୍ତି ବୋଲି । ଅବୁଝା ମନର ଯୁକ୍ତି ସବୁଠାରୁ ବଳଶାଳୀ । ମା'କହୁଥା'ନ୍ତି, ''ଦେଖ୍ ଝିଅ, ତୁ ସମ୍ରାଟଙ୍କର ଏକମାତ୍ର ସନ୍ତାନ ହୋଇଥିବାରୁ ତୋ ଜୀବନ-ପରିଧିରେ କିଛି ବ୍ୟକ୍ତିଗତ ବିଚାର ରହିପାରିବ ନାହିଁ । ସବୁଠିଁ ଥିବ ରାଷ୍ଟ୍ର । ବିଧି ତୋତେ ଏଠି କାଇଁ ଜନ୍ମ ଦେଲା, ଏତିକିରୁ ତୁ ଜାଣିପାରୁନୁ ମା' ?''

ରାଜକୁମାରୀ କିଛି କହିଲେ ନାହିଁ ତ ନିଶ୍ଚୟ, ମାତ୍ର ଭାବୁଥା'ନ୍ତି, ବିଧି ଜନ୍ମ ଦେଲାବେଳେ ମନକୁ ବି ସେମିତି ସବୁ କଥାପାଇଁ ରାଜକୀୟ ନ କଲା କିଆଁ ? କମଳା ପରି ଛାର ଦାସୀଟାଏ ନିଜ ଉନ୍ନିଦ୍ର ମନ-ମୟୂରୀକୁ ଅଳସ ଆକାଶରେ ଉଡ଼େଇ ପାରୁଥିବାବେଳେ ମୋ ମନର ଶୀତଳ ଉପତ୍ୟକାରେ ସୈନ୍ୟସାମନ୍ତ ଘେରି ରହିଛନ୍ତି କାହିଁକି ? ସେ କହିଲେ, ''ମୋ ମନ କଥା ତୁମ ବିନା ମୁଁ ଆଉ କାହାକୁ କହିଥା'ନ୍ତି ? ରାଜ୍ୟର କ'ଣ ଲୋଡ଼ା ବା ସମ୍ରାଟଙ୍କର କ'ଣ ଲୋଡ଼ା ବା ତୁମ ଦୁହିତା ସେ ସବୁପାଇଁ କେତେ ଉପଯୋଗୀ ବା ତା'ର କ'ଣ ଲୋଡ଼ା – ଏସବୁ କଥା ମଝି ମଣ୍ଡପରେ ବସି ତୁମେ ହିଁ କେବଳ ବିଚାର କରିପାରିବ ମା' । ପ୍ରସ୍ଥାନପାଇଁ ଅନୁମତି ପ୍ରାର୍ଥନା କରୁଛି ।''

ସବୁ ନଗ୍ର, ଜନପଦରେ ବିଜୁଳି ପରି ସମ୍ବାଦ ବ୍ୟାପିଗଲା । ଜେମାଙ୍କର ସ୍ୱୟମ୍ବର ହେବ । ଜନମାନସରୁ ଅନ୍ୟ ଆଲୋଚନା ପ୍ରାୟ ସବୁ ଲିଭିଗଲା । ନାଗରିକମାନଙ୍କ ବ୍ୟକ୍ତିଗତ କଳ୍ପନାମାନେ ପରସ୍ପରଭାବେ ପ୍ରତିଯୋଗିତା କଲେ, ଲଢ଼େଇ କଲେ ।

ଜେମା ନିଜେ ମଧ୍ୟ ଏପରି ସମ୍ବାଦ ପାଇ ବିଚଳିତ ହୋଇଗଲେ । କାରଣ ଆଶଙ୍କାର କାଳ ଭଉଁରି ଭିତରେ ଅଣନିଶ୍ୱାସ ହୋଇ ବୁଡିଯାଇଥିବା ମଣିଷ ଠିଆଠିଆ ନିଜକୁ ଆଶାର ରତ୍ନବେଦି ଉପରେ ଆବିଷ୍କାର କରିବା ଛୋଟିଆ କଥା ନୁହେଁ ।

ଗଡ଼ ଜିଣିବା ଆଉ କାହାକୁ କହନ୍ତି ? ଜେମାଙ୍କ ଇଚ୍ଛାଗୁଡ଼ିକ ଏଣିକି ଫୁଲ ବେଣୀର ଦୋଳି-ଦଉଡ଼ି ଧରି ଝୁଲିଲେ । ମେଘମାଳା ପାଦତଳେ ଦେଖାଯାଉଥିଲେ ତ ବସୁଧା ଆକାଶ ପରି ଦୂରଛଡ଼ା ହୋଇଯାଉଥିଲା । ସତ ସହିତ କଳ୍ପନା ମିଶିଲେ ଲୋକସାନ ହୁଏ ସତର । କାଚରାର ହାର ହାର କାଚ ଗଦା ଭିତରେ ସୁହାଗିନୀର ଅଥୟ ମନ ପରି ସତ ବାଉଳବାଉଳ ହେଉଥାଏ ।

ଗୋଟିଏ ଅଶୁଭ ସନ୍ଧ୍ୟା, ଗୋଟିଏ ଅଶୁଭ ସମ୍ବାଦ ।

କମଳା କହିଲା, ''ଜେମା ଦେଈ, ଖବର ଯୋଗାଡ଼ କରିଛି । ସ୍ୱୟମ୍ବରର ସବୁ ଆୟେଜନ ପ୍ରାୟ ସରିଯାଇଛି । ଚିତ୍ରକୂଟ ନରେଶଙ୍କୁ ତୁମେ ବରଣମାଳା ଦେବ ।''

ଦାସୀର କଥା ତାଙ୍କ ଜ୍ଞାନର ଉଭୟ କୂଳ ଛୁଇଁ ପାରୁ ନ ଥାଏ । କୁହା ଯାଉଛି ସ୍ୱୟମ୍ବର, ଅଥଚ ସ୍ୱାମୀ ନିର୍ଦ୍ଧାରିତ ହେଲେ କିପରି ? ସେ ନିର୍ବାକ । ଯାହା ଜାଣିଛି, ଦାସୀ ସବୁ କହିଯାଉ ।

ଦାସୀ କହିଲା, ''କେତେକ କରଦ ରାଜାଙ୍କ ସହିତ ଚିତ୍ରକୂଟ ନରେଶ ମଧ ବସିବେ ସ୍ୱୟମ୍ବର ସଭାରେ । ସମୟ ଆସିଲେ ମହାରାଣୀ ତୁମ ପୁରକୁ ବିଜେ କରିବେ ଏବଂ ଚିତ୍ରକୂଟ ନରେଶଙ୍କୁ ବରଣମାଳା ଦେବାପାଇଁ କହିବେ ।''

ଦାସୀ ଚିତ୍ରକୂଟ ନରେଶଙ୍କ ସମ୍ପର୍କରେ ଯାହା ଶୁଣିଥାଏ ସବୁ କହି ଚାଲିଲା ।

ଜେମା ଘୃଣାର କୌଣସି ପ୍ରଦର୍ଶନୀ ନ କରି ସବୁ ଶୁଣିଯାଉଥା'ନ୍ତି । ଥରେ ବିରକ୍ତହୋଇ କହିଲେ, ''କମଳା, ତୁ ସତକୁ ଓଲଟାଇ କହିଲାବେଳେ ତ ଭାଟମାନଙ୍କ ଠାରୁ ଭଲ କହିପାରୁଛୁ ଲୋ ! ମୋତେ ଅଧିକା ଜଳାନା, ଧାସରେ ତୁ ବି ପାଉଁଶ ହୋଇ ଯାଇପାରୁ ।''

ଦାସୀର ସାହସ କେତେ ଯେ ସେ ଡରି ନ ଥାନ୍ତା ?

ସୂର୍ଯ୍ୟ ବେଶି ଥର ଉଦୟ ବା ଅସ୍ତ ହେବାକୁ ସୁଯୋଗ ପାଇ ନାହାନ୍ତି । ନଅର ସାରା ଟୁପୁରୁ ଟାପୁରୁ ଫୁସୁର ଫାସର ଚାଲିଲା । କାହା ପ୍ରାଣ ନିଜର ପ୍ରିୟ ନୁହେଁ ଯେ ! ମହାରାଜାଙ୍କ ମୁକୁଟରୁ ମଣି ଖସିଯିବ । ଅକ୍ଷୟ ଅମିୟ ଭଣ୍ଡାର ହଳାହଳରେ ପରିଣତ ହୋଇଯିବ । ବାସୁକି ଖାଲି ଫଣା ହଲେଇବନି, ନିଜେ ଲେଉଟି ପଡ଼ିବ ।

ଯେତେ ଯାହା କଲେ ବି କଥାଟା ନଅରର ପରିଧିରେ ସିନା ଲୁଚିଲା, ମାତ୍ର ରାଜ୍ୟ ସାରା ଡିବିଡିବି ବାଜିଲା । ଛି ଛି, ରାଜକୁମାରୀ ନଅର ଛାଡ଼ି କୁଆଡ଼େ ପଳେଇଛନ୍ତି ।

ସମସ୍ତଙ୍କ ସାଙ୍ଗରେ ମିଶି ଦାସୀ କମଳା ବି କାନ୍ଦୁଥାଏ । ମାତ୍ର, ଏକୁଟିଆ ସେ ବହିର୍ଦ୍ଦିଗ ଖୋଜି ସାରିଲାଣି । ସେଇ ଜଣେ ଘୋଡ଼ା ସଇସ ମିଳୁନି । ସେ ଖୁବ୍ ସହଜରେ ଅନେକ କଥା ଅନୁମାନ କରି ପାରୁଥାଏ – କିଛି କହିବା ସମ୍ଭବ ନୁହେଁ ଭାବି ଖାଲି ଫୁଲି ଫୁଲି କାନ୍ଦୁଥାଏ । ଭାବୁଥାଏ, ପୁରୁଷଗୁଡ଼ାକ ଏତିକି ଲମ୍ପଟ ? ରତିକାଳରେ ସିଏ ମୋତେ କେତେ ଜାତିର ସୁଖ କଥା ନ କହୁଥିଲାଟି ! ଜେମାଙ୍କୁ ସିଏ କାହିଁକି ଭଲ ଲାଗିଲା ? ଜେମା ତାକୁ ଚିହ୍ନିଲେ କିପରି ?



# କଳମି ମଣିଷ

ନନ୍ଦନନ୍ଦନ ବାବୁଙ୍କ ଘରେ କେତେକ ଅନାଗତ ଆଶଙ୍କା ଓ ଆତଙ୍କର ଯେଉଁ ଅସ୍ୱସ୍ତିକର ବାତାବରଣ ତାହା ତାଙ୍କ ପରିବାର ବାସ କରୁଥିବା ଟାଇପ୍ ଫୋର୍ କ୍ୱାର୍ଟର୍ସର ଲମ୍ୱା ଚଉଡ଼ା ଅଗଣା, ବାଗାନ, ବାରଣ୍ଡା ଆଦିରୁ ଜଣା ପଡ଼ିଯାଉଥାଏ । ଏପରି, ସତେକି ଆଉ ଗଛଗୁଡ଼ିକ ଫୁଲ ଫୁଟେଇବା ବନ୍ଦ କରିଦେଇଛନ୍ତି ।

ଅର୍ଦ୍ଧାଙ୍ଗିନୀଙ୍କ ସମ୍ପର୍କରେ କୁହାଯାଏ, ସେମାନେ କୁଆଡ଼େ ପୁରୁଷ ଜୀବନ-ପୁସ୍ତକର ସୂଚିପତ୍ର । ସେମାନଙ୍କ ବିଷୟରେ ନଜାଣିଲେ ସଠିକ୍‌ଭାବେ କର୍ତ୍ତାଙ୍କ ଦୁଃଖ କଳନା କରିବା ତ ଭିନ୍ନ କଥା, ବୈଭବ ବିଷୟରେ ମଧ୍ୟ ଅନୁଭବ କରି ହୁଏ ନାହିଁ । ବର୍ତ୍ତମାନ ରୀତା ରଥ ନାମ ଧାରଣ କରିଥିବା ନନ୍ଦନନ୍ଦନ ବାବୁଙ୍କ ଧର୍ମପତ୍ନୀ ଏକଦା ରୁକ୍ମିଣୀରାଣୀ ନାମ ବହନ କରିଥିଲେ, ଏ କଥା ବିଶ୍ୱାସ କରିହେଉ ନାହିଁ । ଯେଉଁ ସରାଗ ବା ଯେଉଁ ମାନସିକତା ଯୋଗୁଁ ଏକୋଇଶା ଦିନ ଅଜା ଏହି ନାଁଟି ଦେଇଥାଆନ୍ତୁ ନା କାହିଁକି, ଭଦ୍ରମହିଳା ଆଉ ବଞ୍ଚି ନଥିବା ସେଇ ବୃଦ୍ଧଙ୍କୁ ଏପର୍ଯ୍ୟନ୍ତ ମାନସିକଭାବେ କ୍ଷମା କରିପାରି ନାହାନ୍ତି । ଗାଉଁଲି ପରିବେଶରେ ସମୁଦାୟ ଉଚ୍ଚ ମାଧ୍ୟମିକ ପର୍ଯ୍ୟନ୍ତ ପାଠପଢ଼ିଥିବା କନ୍ୟା କେବଳ ଏଇ ନାଁ ପାଇଁ ଯଥେଷ୍ଟ ହୀନମନ୍ୟତାର ଶିକାର ହୋଇଛି ।

ନିଜ ବିବାହ ପୂର୍ବରୁ ସେ କେତେକ ସତର୍କ ପଦକ୍ଷେପ ନେଇଥିଲେ । ଜାତକ ମେଳନପାଇଁ ଟିପ୍ପଣୀ ପ୍ରସ୍ତୁତଠାରୁ ବୋଉ ସହିତ ଜିଗର ଲଗେଇ ନିଜ ନାଁକୁ ସେ ରୀତାରେ ପରିବର୍ତ୍ତନ କରାଇ ଦେଇଥିଲେ । ଏଇଠି ପଡ଼ିଲା ରାଜଯୋଟକ । ସ୍ୱୀକାର ପତ୍ର, ନିମନ୍ତ୍ରଣ ପତ୍ରରେ ଆଉ ଥରେ ପୁରୁଣା ନାଁଟି ଫେରି ଯେମିତି ଚେକାମାଲି ନପକାଏ, ଏତେ ଯତ୍ନ ନେବା କୌଣସି ବରୟିତ୍ରୀ ପକ୍ଷେ ଅସ୍ୱାଭାବିକ ଜଣାପଡୁଥିଲେ ମଧ୍ୟ, ସବୁ ସେ ନିଜ କାଇଦାରେ କରିଥିଲେ । ତାଙ୍କ ସହିତ ଯାନି ଯୌତୁକ ଯାହା ଆସିବା କଥା ଖୋଜିଲୋଡ଼ି ସବୁ ଆଣିଲେ । ମାତ୍ର ମନେ ରଖି ରଖି ସାର୍ଟିଫିକେଟ୍ ଖଣ୍ଡିକ ଭୁଲି ଛାଡ଼ି ଆସିଲେ । ତାଙ୍କୁ ଲାଗୁଥିଲା, ସେଇ ହୀନମାନିଆ କାଗଜ ଖଣ୍ଡିକ ତାଙ୍କପାଇଁ ଅପଯଶର ଏକ ନିଷ୍ଠୁର ପ୍ରମାଣପତ୍ର । ରାଜଧାନୀକୁ ଆସିବାର କେତେବର୍ଷ

ପରେ ସେ ଯେଉଁ ଦିନ ପ୍ରଥମ ନିଜର ମେଟାଲ ବୋର୍ଡ଼ ନାମଫଳକ ଗେଟର ଅନ୍ୟ ସ୍ତମ୍ଭରେ ଝୁଲାଇଲେ, ସେଇ ଦିନଠାରୁ ନନ୍ଦନନ୍ଦନ ବାବୁଙ୍କ କାଠର ନାମଫଳକଟି ନିଷ୍ପ୍ରଭ ଦେଖାଯାଇଥିଲା । ସେଇଠୁ ଅନେକ ବର୍ଷ ବିତିଗଲାଣି ଅବଶ୍ୟ ।

ଯୌବନ ମଝି ପାହାଚ ଅପେକ୍ଷାକୃତ ଏକ ବଡ଼ ଇଲାକା । ଆରମ୍ଭରେ ମୋଟେ ପାଦ ପକେଇଛନ୍ତି ସେ । ବିବାହ ଦଶ ବର୍ଷ ପୂରି ନାହିଁ । ବେଳେବେଳେ ମନ ଖୋଲି ଦିଅନ୍ତି — ଆଉ କିଏ ହୋଇଥିଲେ କହୁଥାନ୍ତା, ମୋ ବୟସର ଝିଅ ବାହାହୋଇ ନାହାନ୍ତି । ଅନେକ ସମୟରେ ଉଦାର, ନିରୀହପଣ ରୂପକୁ ଏମିତି ପ୍ରଲୋଭିତ କରି ଗଢ଼ି ପକାଏ, ଏକଥା ମୁକୁମୁକୁ ବୟସ ଯୋଗୁ ହୁଏତ ଯୁବତୀମାନେ ବୁଝି ପାରନ୍ତି ନାହିଁ । ମାତ୍ର ତାହା ବାସ୍ତବତାର ଅତି ନିକଟରେ । ରୀତା ଦେବୀ ଏଇ ଗୁଣର ଅଧିକାରିଣୀ । ଆହୁରି ବି, ଅନେକ ସମୟରେ ଚେହେରାର ଝଲକ, ସାମାଜିକ ମେଳାପୀପଣରେ ରୁଚିସମ୍ପନ୍ନ ପଦେ ଅଧେ ଇଂରାଜୀ କହି ପାରୁଥିବା ଯୋଗ୍ୟତାକୁ ସଂସ୍କୃତିର ମାପକାଠି ବୋଲି ଲୋକେ ଯେମିତି ଚିନ୍ତନ୍ତି, ଭଦ୍ରମହିଳା କୋଉଥିରେ କମ୍ ନୁହନ୍ତି ।

ରୂପଟି ବି ସେମିତି । ସୁନା ଖଡ଼ିକାପରି ଚେହେରା । ବେଶ୍ ଡଉଲ ଡାଉଲ । ତାଳରୁ ତଳିପା ଯାଏ କୋଉଠି ଟିକେ ବାରିବାର ନାହିଁ । ଯୋଉ ଗୋଟିଏ ଖୁଣ, ତାହା ବି ରୂପକୁ ଶତଗୁଣ କରି ପକାଇଛି । ବାଁ ଆଖି ଟିକିଏ ଟେରା । ମୋଟାମୋଟି କହିବାକୁ ଗଲେ ଏକଦମ ଇଲାଷ୍ଟିକ୍ ଚେହେରା । ମନ୍ମଥାହତ ଆଶା ନେଇ କେହି ଯଦି ତାଙ୍କ ବୟସ ଅନୁମାନ କରିବ ସେ ତାହା ଅସଲ ବୟସ ଠାରୁ ପାଞ୍ଚ ଦଶ ବଢ଼ି ପାରେ, ପାଞ୍ଚ ଦଶ କମି ପାରେ । ହୁଏତ ପ୍ରଶ୍ନଉଠିବ — କିହୋ, ଏପରି ମନ ନେଇ ଯିଏ ଭାବିବ ସିଏ ବଢ଼େଇବ କାହିଁକି ? ହଁ ସମ୍ଭବ । କାରଣ ସଚେତନତା ଦେଖେଇ ହେବାକୁ ଭଦ୍ରାମିର ଖୋଳପା ଭିତରେ ପଶି କେତେକ ପୁରୁଷ ଅଭିଳାଷିତାମାନଙ୍କର ବୟସ କଳନା କରିବାରେ ଏହିପରି ସର୍ବନିମ୍ନ ଆପାତ ଶ୍ଳୀଳତାବୋଧ ଦେଖାନ୍ତି । ବୟସ ଯୋଗୁ କେଶ ଧଳା ହୋଇଥିଲେ ବି କହନ୍ତି — ମୋତେ କୋଡ଼ିଏ ହୋଇ ନ ଥିଲା ସବୁ ପାଚିଯାଇଛି ବା ଚନ୍ଦାମୁଣ୍ଡ ସପକ୍ଷରେ ଯୁକ୍ତି ଥୁଅନ୍ତି — ହେରିଡିଟାରୀ । ଯାହାହେଉ, କଥା ହେଲା ରୀତା ଦେବୀଙ୍କ ବୟସ । ଅନ୍ୟ ମନରେ ନିଜ ବୟସ ସମ୍ପର୍କରେ ଏପରି ଦୋଳାୟିତ ଭାବନା ସୃଷ୍ଟି କରାଇପାରୁଥିବା ପ୍ରାକୃତିକ ସୁଯୋଗ କ୍ୱଚିତ୍ ରମଣୀଙ୍କୁ ମିଳିଥାଏ, ଯାହା ରୀତା ଦେବୀଙ୍କର ଅଛି ।

ଇତି ମଧ୍ୟରେ ରୀତା ଦେବୀ ଗେଟ୍ ଖୁଣ୍ଟରୁ ନିଜ ନାମଫଳକଟିକୁ ସମସ୍ତଙ୍କ ଅଲକ୍ଷ୍ୟରେ କାଢ଼ି ଆଣିଛନ୍ତି । ପିଅନ ଶମ୍ଭୁ କହିଲା, ''ମା ତମ ନାଁ କିଏ ଗେଟ୍‌ରୁ ନେଇ ଗଲାଣି ।'' ପ୍ରଥମେ ତାଙ୍କୁ କଥାଟା କେମିତି ଅଖାଡୁଆ ଶୁଭିଲା । ଏ ନାଁ ମଝି ସମୁଦ୍ରର ଅନେକ ପୋତକୁ ଉପକୂଳ ଆଡ଼କୁ ଟାଣିଆଣିପାରେ, ତାକୁ ନେଇ ଯିବ କିଏ ରେ ? ଏପର୍ଯ୍ୟନ୍ତ ପୋଷଣ କରିଥିବା ତାଙ୍କର ଏଇ ବିଶ୍ୱାସ ଉଡ଼ନ୍ତା କଙ୍କି ପର ଛିଡ଼ିଯିବା ପରି ଏବେ ଘୁଷୁରି ଘୁଷୁରି ଚାଲୁଛି । ଶମ୍ଭୁ କଥାର ମର୍ମ ବୁଝିପାରି ସେ କହିଲେ, ''ଓହୋ, ଆଚ୍ଛା ଆଚ୍ଛା, ଠିକ୍ ଅଛି । ତୋ'ର ସେଥିରେ ମୁଣ୍ଡ ପୂରେଇବା ଦରକାର ନାହିଁ ।''

ସମ ଦଶାରେ ପଡ଼ିଥିବା ଶମ୍ଭୁର ଚିନ୍ତା ଭିନ୍ନ ହୋଇପାରେ, ମାତ୍ର ମା'ଙ୍କ ଦୁଃଖ ବୁଝିବାରେ କିଛି ଅସୁବିଧା ହେଲା ନାହିଁ ।

ଗତ କେତେ ଦିନ ହେଲା ରୀତା ଦେବୀଙ୍କୁ ସବୁ କଥା କେମିତି ଅଡୁଆ ତଡୁଆ ଲାଗୁଛି । ଏପରି କି କଲୋନୀର ଆଉ କାହା ଗେଟ୍ ସାମ୍ନାରେ ଦୁଇ ଚାରି ଜଣ ଛିଡ଼ା ହୋଇ ଗପ କରୁଥିବା ଦେଖିଲେ ତାଙ୍କ ମନ ଟାଣି ହୋଇ ଯାଉଛି । ଆମ କଥା କିଛି ଆଲୋଚନା କରୁ ନାହାନ୍ତି ତ ? ଯେକୌଣସି ବ୍ୟକ୍ତି ସହିତ ବୈର ଭାବ କାହିଁକି ହୋଇପାରେ, ସେଥିପାଇଁ ନିଜେ କାରଣ ଗୁଡ଼ାଏ ସୃଷ୍ଟି କରି ଯୋଡ଼ି ପକାଉଛନ୍ତି । କେଇ ଦିନ ପୂର୍ବେ ଏପରି ବିଲକ୍ଷଣ ଚିନ୍ତା ତାଙ୍କ ମନରେ ମୋଟରୁ ଆସୁ ନ ଥିଲା ।

କେତେ ସମୟ ପରେ ଏକ ମନ୍ତ୍ରୀମାର୍କା ଗାଡ଼ିରେ ନନ୍ଦନନ୍ଦନ ବାବୁ ଆସିଲେ । ତାଙ୍କ ମୁହଁ ଦେଖି ଉତ୍ତର କ'ଣ ମିଳିବ ଏକଥା ଅନୁମାନ କରି ହେଉଥିଲେ ମଧ୍ୟ ରୀତା ଦେବୀ ପଚାରିଲେ, ''କ'ଣ କିଛି ହେଲା ?''

''ନା, ବୋଧହୁଏ ଦିନେ ଦି'ଦିନରେ ଅର୍ଡର ବାହାରିଯିବ ।''

ନନ୍ଦନନ୍ଦନ ବାବୁ ଚାକିରି ଆରମ୍ଭ କରିଥିଲେ କୌଣସି ଜିଲ୍ଲା ଅଫିସରେ ଏଲ୍.ଡି.ସି. ଭାବେ । ଦୁଇ ବର୍ଷ ପରେ ବିବାହ । ତୃତୀୟ ବର୍ଷ ବେଳକୁ ମନ୍ତ୍ରୀଙ୍କ ଷ୍ଟାଫ୍ ହେବା ସୁଯୋଗ ତାଙ୍କୁ ମିଳିଲା । ନିଜ ସୌଭାଗ୍ୟ ତଥା ଅଭ୍ୟୁତ୍‌ଥାନକୁ ସେ ଅନେକ ଅସହାୟ ପୁରୁଷଙ୍କ ପରି ତାଙ୍କ ଜୀବନରେ ରୁକ୍ମିଣୀରାଣୀଙ୍କ ଆଗମନ ସହିତ ମାନସିକ ଭାବେ ଯୋଡ଼ି ପକାଇଛନ୍ତି । ସମ୍ଭବତଃ ତେଣୁ, ରୁକ୍ମିଣୀରାଣୀ ଖୋଳପା ଛାଡ଼ି ରୀତାରେ ପରିଣତ ହେବପାଇଁ ମଧ୍ୟବର୍ତ୍ତୀ ସମୟ ଅତ୍ୟନ୍ତ ସଂକ୍ଷିପ୍ତ ହୋଇପଡ଼ିଲା ।

କଥାହେଲା, ମନ୍ତ୍ରୀମାନଙ୍କ ଷ୍ଟାଫ୍ ମୋଟେ ଅଲଗା କ୍ୟାଡ଼ର ନୁହନ୍ତି । ବିଭିନ୍ନ ଜିଲ୍ଲା ଓ ରାଜଧାନୀର ବିଭିନ୍ନ ବିଭାଗରୁ ମନ୍ତ୍ରୀମାନଙ୍କ ଖୁସି ଅନୁଯାୟୀ ସେମାନଙ୍କୁ

ଅଣାଯାଏ । ଫେଣାରୁ ମହୁ ଚାଖିଥିବା ଭାଲୁ ପରି ସେମାନେ ଗଛ ମୂଳ ଆବୋରି ବସନ୍ତି । ଯେତେ ମନ୍ତ୍ରୀ ବଦଳୁଥିଲେ ମଧ୍ୟ ଏମାନେ ନିଜର ସଂସ୍ଥାନ ନୂଆ କାହା ପାଖରେ ହେଲେ ଯୋଗାଡ଼ କରିଦିଅନ୍ତି । ମନ୍ତ୍ରୀ ହେବାପାଇଁ ପ୍ରଶାସନିକ ବିଚକ୍ଷଣତା ଯେମିତି ନିହାତି ଅପରିହାର୍ଯ୍ୟ ନୁହେଁ, ଷ୍ଟାଫ୍ ଯୋଗାଡ଼ କରିବା କ୍ଷେତ୍ରରେ ବିଧିବ୍ୟବସ୍ଥା ମଧ୍ୟ ସେମିତି କୋହଳ ବୋଲି ସେଇ ପଦପାଇଁ ଲାଳାୟିତ ହତାଶ ଲୋକେ ଅନ୍ତତଃ କହନ୍ତି । ପ୍ରତି ଥର ମନ୍ତ୍ରିମଣ୍ଡଳ ବଦଳିଲାବେଳକୁ ଏପରି କେତେକ ଖୁଚୁରା ଓ ପାଇକାରୀ ଅସୁବିଧା ଦେଖାଯାଏ । ହେଲେ ଏଥର ତାହା ଡିପୋ ଛୁଇଁଗଲା । ନୁଖୁରାଟାରେ ସମସ୍ତେ ବଖାଣି ବଖାଣି ଖାଲି ଶବ୍ଦବାଣରେ ଦୁର୍ନୀତିକୁ ଏମିତି ଅସବର୍ଣ୍ଣରେ ପରିଣତ କରାଇଦେଲେ ଯେ ଖୋଦ୍ ଜ୍ଞାତ ଚାଣ୍ଡାଳମାନେ ମଧ୍ୟ ତା ପାଖ ମାଡୁ ନାହାନ୍ତି । ଶିଳଶିଳପୁଆମାନ ଅଥୟ ହୋଇ ଗଗନରେ ଉଡୁଛନ୍ତି, ନନ୍ଦନନ୍ଦନଙ୍କ ପାଇଁ ରୀତା ଦେବୀଙ୍କ ଅଯଥା ଗୌରବବୋଧକୁ ପଚାରେ କିଏ !

"ଠିକ୍ ଅଛି । ଫେରିଯିବା । ଟୁକୁଲ୍ ବି କାହିଁକି ବାପା ବୋଉଙ୍କ ପାଖରେ ଆଉ ରହିବ ?" ଏକଥା ସେ ସ୍ୱାମୀଙ୍କୁ କହିଲାବେଳେ ଦୀର୍ଘ ନିଃଶ୍ୱାସକୁ ଜବରଦସ୍ତ ଚାପି ଦେଇଥିଲେ । ଯେତେହେଲେ ସେ ସ୍ୱାମୀ, ଇହକାଳ ପରକାଳର ଦେବତା । ତାଙ୍କ ପ୍ରତିଷ୍ଠାର ମସ୍‌ନଦ ତଳେ ମୂଷା ଗାତ ଜଗିବା ଦାୟିତ୍ୱ କାହାର ? ସ୍ତ୍ରୀର ନିଷ୍ଠା ଓ କର୍ତ୍ତବ୍ୟ କଂକ୍ରିଟ୍‌ରେ ପରିଣତ ହୋଇ ସେ ଅଞ୍ଚଳକୁ ସୁରକ୍ଷିତ କରିବା ଦରକାର । ନିରାଶାର ବାଣୀ ତାଙ୍କ କର୍ଣ୍ଣ ସ୍ପର୍ଶ କରିବା ଉଚିତ ନୁହେଁ । କିଏ କ'ଣ ନୀତିବାକ୍ୟ ଆଗରୁ କରିଛି ତାକୁ ଗୁଲିମାର, ଅସଲରେ ଆଶ୍ରୟ ବିନା ବଞ୍ଚିପାରନ୍ତି ନି ଅନେକ ଅସହାୟ ପୁରୁଷ, ଆଶ୍ରୟ ବିନା ବଞ୍ଚିପାରନ୍ତି ନି ଲେଖକ କୁଳ ଏବଂ ଆଶ୍ରୟ ବିନା ସୃଷ୍ଟି ହେବେ ନାହିଁ ବା ବଞ୍ଚିପାରିବେ ନାହିଁ ରାଜନୈତିକ ଚାମଚା ଦଳ । "ହେ....ଇ, ସୁଖେନ୍ଦୁ ବାବୁଙ୍କୁ ମୋ ନାଁ କହି ଟିକେ ପଚାରିଲନି । ସିଏ ତ କେମିତି କେଜାଣି ୟା ଭିତରେ ବେଶ୍ ଯୋଡ଼ି ହୋଇସାରିଲେଣି ।" ସ୍ୱାମୀ ନିରୁତ୍ତର ରହିବାରୁ ରୀତା ଦେବୀ ପୁଣି କହିଲେ, "ମୋ ସୁନାଟା ପରା, ଏମିତି ଅଥୟ ହୁଅନି ।"

ଏଇ ପରିସ୍ଥିତିରେ ରୀତା ଦେବୀ କହିଥିବା 'ମୋ ନାଁ'ର ଅସ୍ଫାଳନ ନନ୍ଦନନ୍ଦନ ବାବୁଙ୍କୁ ଆଦୌ ସୁଖ ଲାଗିଲା ନାହିଁ ଯଦିଓ ସେଇ ନାଁଟିର ଗୁରୁତ୍ୱକୁ ସେ କଦାପି ଊଣା ନଜରରେ ଦେଖି ନାହାନ୍ତି । ସେ କହିଲେ, "ଛାଡ଼ ମ, ନିଜ କଥା ଛାଡ଼ି ସେ କାଇଁ ଆମ କଥା ବୁଝିବାକୁ ଯିବେ ? ଆମେ ତାଙ୍କର କୋଉ ସାହାଯ୍ୟରେ ଲାଗିବୁ କି ?"

''କ'ଣ ହେଲା, ଆମେ ତାଙ୍କ ସାହାଯ୍ୟରେ ଲାଗିନୁ ? ଯୋଉଦିନଠାରୁ ସେ ସ୍ତ୍ରୀ ବେମାର ବୋଲି କହୁଛନ୍ତି, ସେ କ'ଣ ଭାବିଛନ୍ତି ସତକଥା ମୁଁ ଜାଣି ପାରିନି ବୋଲି.... ।'' ଶ୍ରୋତା ଯେ ତାଙ୍କର ସ୍ୱାମୀ ଏବଂ ସେ ଯାହା କହିଲେ ତହିଁର ଅର୍ଥ ଖେଳଘର ନୁହେଁ, ଏ ଦୁଇଟି ଯାକ କଥା ରୀତା ଦେବୀ ପୈଶାଚିକ ହୋଇ ମୁହୂର୍ତ୍ତକ-ପାଇଁ ଯେମିତି ଭୁଲିଯାଇଥିଲେ ।

ଦୁଇଟି ବିପରୀତଗାମୀ ସ୍ରୋତ ତାଙ୍କ ମନ ଭିତରେ ଘୁ ଘୁ କୁଣ୍ଡଳୀ କାଟି ବହି-ଯାଉଥିବା ବଢ଼ିଲା ନଈ ପରି ନିର୍ଦ୍ଦୟ ଭାବେ ଅତଡ଼ା ଖସେଇବାରେ ଲାଗିଛନ୍ତି । ବଳ ସଂଗ୍ରହ କରୁଥାନ୍ତି ସେ — ନା, ମାୟା ତ୍ୟାଗ କରିବି । ଆସକ୍ତିର ଅଯଥା ପଥଟାଏ ଆମେ ଆବୋରି ନେଇଛୁ । ରେ ପଥର, ହେ ପାପିନୀ ! ଫେରିଯାଅ ନଗ୍ରଧାମେ, ସଜଡ଼ା ହୋଇଛି ସେଠି ପୁଣ୍ୟର ପସରା । ସମାନ ଭାବରେ ଆଉ ଗୋଟିଏ ଚିନ୍ତା ଘାରୁଥାଏ—ଅଭୀଷ୍ଟ ସୁଖ ପ୍ରାପ୍ତି ଛଡ଼ା ପୁଣ୍ୟ କ'ଣ ? ଯେଉଁମାନେ ପୁଣ୍ୟର ସଂଜ୍ଞା ତିଆରି କରି ଛନ୍ତି, ସେମାନେ କଦାପି ହତାଶ ହୋଇ ନାହାନ୍ତି ବୋଲି ଯଥେଷ୍ଟ ପ୍ରମାଣ ଛାଡ଼ି ନଗଲେ କିଆଁ ? ଓହରି ଗଲେ ଅସମର୍ଥର ଅପଯଶ ନେଇ ରାଜରାସ୍ତାରୁ ତଳକୁ ଖସିପଡ଼ିଲ ବୋଲି ଲୋକେ କହିବେ ନାହିଁ ତ ? ଏ ସଂଘାତ କେବଳ ମନ ଓ ମଣିଷ ଭିତରେ ନ ଥିଲା, ଥିଲା ଇଚ୍ଛାର ପୃଥିବୀକୁ କୌଣସି ପ୍ରକାର ନିଜର ବଶମ୍ବଦଭାବେ ବିଶ୍ୱାସ କରି ବସିଥିବା ଆତ୍ମପ୍ରତ୍ୟୟ ଓ ଚଟକଣିମରା ନିଷ୍ଠୁର ବାସ୍ତବତା ଭିତରେ । ହାରିଯିବାଠାରୁ ପରାଜୟର ଆଶଙ୍କା ଆହୁରି ଭୟାନକ, ଏଇ ଚିନ୍ତାରେ ସେ ବେଶି ଶିହରି ଉଠୁଥାନ୍ତି ।

ଯଦି ନନ୍ଦନନ୍ଦନ ସତରେ କଲେକ୍ଟରେଟ୍‌କୁ ଫେରିଯା'ନ୍ତି, ଅନେକ ଲୋକେ ଦାଉ ସୁଝେଇଲା ପରି ପରିହାସ କରିବେ । ତାଙ୍କର ଅର୍ଜିଥିବା ଧନ, ଗଢ଼ିଥିବା କୋଠାବାଡ଼ି, ଦେଖେଇ ହୋଇଥିବା ଚାକଚକ୍ୟ—ଏହିସବୁ ସମୁଦାୟ କାରଣର ହୁଏତ କିଛି ଅଂଶ ହୋଇପାରନ୍ତି, ମାତ୍ର ବଡ଼କଥା ହୋଇ ପଡ଼ିବ, ବାବୁଙ୍କର ଅନ୍ୟମାନଙ୍କ ପ୍ରତି ହେୟଭାବ ଓ ବାବୁଆଣୀଙ୍କର, ଆଉ କିଛି । ''ଯେମିତି ହେଲେ କଥା ସଜାଡ଼ି ହୋଇଥାନ୍ତା, ହେଲେ ତମେ ଯେଉଁ ପରି ଦଳ ସହିତ ମିଶି କର୍ମକର୍ତ୍ତା ହୋଇପଡ଼ିଲ, ସେ ଚିହ୍ନ କ'ଣ ଏତେ ସହଜରେ ଲିଭିବ ?''

''ତୁମେ ବୁଝି ପାରୁନା । ମୁଁ କ'ଣ କରିଥା'ନ୍ତି ? ଏତେ କଥା କେହି କ'ଣ ଅନୁମାନ କରିପାରିଥିଲେ ? ତୁମେ ପାରିଥିଲ ?'' ଅସହାୟ ଉତ୍ତର ଥିଲା ରୀତା

ଦେବୀଙ୍କର । ସେ ଆହୁରି ବିଚଳିତ ହୋଇପଡ଼ିଥିଲେ । କାରଣ ମନ୍ତ୍ରୀମାନଙ୍କ ମଧ୍ୟରୁ କେହି ଜଣେ ହେଲେ, ମାମୁଁଙ୍କ ମଉଳା ଭାଇଙ୍କ କ୍ବାଇଁର ଭିଣୋଇଙ୍କ ଝିଅର ଶ୍ୱଶୁରଙ୍କ ପିଉସୀ ପୁଅ ଭାଇର ମାଉସୀଙ୍କ ନଣନ୍ଦର ଦିଅର ପରି ସମ୍ପର୍କ ଯୋଡ଼ିହେବା ଅବସ୍ଥାରେ ମଧ୍ୟ ମିଳୁ ନାହାନ୍ତି ।

ଖଣ୍ଡଗିରି ଗୁମ୍ଫାର ବାବାଙ୍କପାଖକୁ ଯାଇଥିଲେ ସେ । ଆଶ୍ଚର୍ଯ୍ୟ କଥା, ଇଏ କିଛି କହି ନାହାନ୍ତି, ନମସ୍କାର କରି ଉଠିଲାବେଳକୁ ବାବା କହିଲେ, ‘‘ମା’ ସ୍ଥାନାନ୍ତର ସଙ୍କଟରେ ତୁମେ ଉତ୍ପୀଡ଼ିତ ହେଉଛ । ସ୍ୱାମୀଙ୍କ ପ୍ରତି ଶନିଙ୍କର ପାପଦୃଷ୍ଟି ଏବଂ ବୃହସ୍ପତିଙ୍କ ସହିତ ଶନିଙ୍କର ଷଷ୍ଠାଷ୍ଟମ ଯୋଗ । ବ୍ୟସ୍ତ ହୁଅ ନାହିଁ । ମୁଁ ଭୈରବୀଙ୍କୁ କହୁଛି, ସେ ତୁମକୁ ସାହାଯ୍ୟ କରିବେ । ଗୋଟିଏ ମାଳା ଦେଉଛି । ଶୁଦ୍ଧ ଗୋଦୁଗ୍ଧରେ ଧୋଇ ଆଜି ରାତ୍ରିର ଦ୍ୱିତୀୟ ପ୍ରହରରେ ତାଙ୍କୁ ପିନ୍ଧାଇ ଦେବ । ଆଉ ଗୋଟିଏ ପଦାର୍ଥ ଦେଉଛି । ନିଜ ପାଖରେ ରଖିଥିବ । କାହାରିକୁ କହିବ ନାହିଁ । କାର୍ଯ୍ୟସିଦ୍ଧି ହେବାପର୍ଯ୍ୟନ୍ତ ସ୍ୱାମୀଙ୍କୁ କହିବ, ସେ ତୁମ ବାମ ଚରଣ ତଳୁ ପାଦ ରେଣୁ ନେଇ ନିଜ ମଥାରେ ମାରି ବାହାରକୁ ଯାଉଥିବେ । କାର୍ଯ୍ୟ ସିଦ୍ଧି ହେଲା ପରେ ନିଶ୍ଚୟ ସାକ୍ଷାତ୍ କରିବ ।’’

ସବୁ କଥା ସେ କରୁଛନ୍ତି । ଯାହା ଜଣାପଡୁଛି, ପଦ୍ମ ବରଂ ଦୂରକୁ ଘୁଞ୍ଚି ଯାଉଛି । ତଥାପି ବାବାଜୀଙ୍କୁ ଅବିଶ୍ୱାସ କରିବାକୁ ସାହସ କୁଳୋଉ ନାହିଁ ।

ଯେତେ ନିରିଖେଇ ଅନେଇଲେ ମଧ୍ୟ ଭଦଭଦଳିଆ, ହଳଦୀବସନ୍ତଟିଏ ବି ଦେଖିବାକୁ ମିଳୁ ନାହାନ୍ତି । ଘରଟା ସାରା ଝିଟିପିଟି ବୁଲୁଛନ୍ତି କାହିଁରେ କେତେ । ହେଲେ ତାଙ୍କ ଆଶା ସହିତ ସତ୍-ସତ୍ କହିବା ପାଇଁ ତାଳ ଦେଇ ଗୋଟାଏ ହେଲେ ବୋବୋଉ ନାହିଁ ।

ବାବୁ ସବୁ କଥା କରି, ଅଫିସ ଯିବାବେଳେ କଳା ବିଲେଇ ବାଟ କାଟି ଦେଲା । ମା’ଙ୍କ ଡ଼ାହାଣ ଆଖିଟା ଫିର୍ ଫିର୍ ହୋଇ ନାଚୁଛି । ଆଉ ତ୍ରାହି ନାହିଁ । ସେତିକି ବେଳେ ଶମ୍ଭୁ ଆସି ପହଞ୍ଚିଲା । ଅନ୍ୟ ଦିନ ହୋଇଥିଲେ ନିଶ୍ଚୟ ରୀତା ଦେବୀ ଚିତ୍କାର କରିଥାନ୍ତେ, ‘‘ଚାକିରି କରିବାକୁ ଇଚ୍ଛା ନାହିଁ କିରେ ?’’ ଆଜି କଥା ନିଆରା । ଆଉ କାହିଁକି କ୍ଷମତାର ଲୋଭକୁ ମାୟାଜାଲରେ ଧରିବାକୁ ଚେଷ୍ଟା କରିବା । ଶମ୍ଭୁ କହିଲା, ‘‘ମା ଟିକେ ଭିତରକୁ ଆସିବନି ?’’

ରୀତା ଦେବୀ ଘର ଭିତରକୁ ଯାଇ ଶମ୍ଭୁକୁ ପଚାରିଲେ, ‘‘କ’ଣ ହେଲା ?’’

''ଅମୁକ ମନ୍ତ୍ରୀ । ଏମ୍.ଏଲ୍.ଏ. କଲୋନୀରେ ରହୁଛନ୍ତି । ମୁଁ ତାଙ୍କ ଘରୁ ଏବେ ଆସିଲି । ମୋ ଦାଦା ପୁଅ ଭାଇ ତାଙ୍କ ରୋଷେଇଆ । ତାକୁ କହିଥିଲି । ମନ୍ତ୍ରୀ କୁଆଡ଼େ ମୋ କଥାପାଇଁ ହଁ କି ନା କିଛି କହିଲେନି । ବାବୁଙ୍କ ଭଳିଆ ଯୋଗ୍ୟ ଲୋକ ତାଙ୍କର ଦରକାର । ତମେ ଟିକେ ତାଙ୍କୁ ଦେଖା କରନ୍ତନି ?'' ଏକା ନିଃଶ୍ୱାସରେ ସବୁ କଥା ଶମ୍ଭୁ କହି ସାରିବା ପରେ ରୀତା ଦେବୀ କହିଲେ, ''ଆଚ୍ଛା ହଉ ।'' ନେହୁରା ହୋଇ ଶମ୍ଭୁ କହୁଥାଏ, ''ମା' ମୋ କଥା ଭୁଲି ଯିବନି । ମନ୍ତ୍ରୀଙ୍କୁ କହି ମୋତେ ଯେମିତି ହେଲେ ରଖିବ । ମୋଟରୁ ବର୍ଷେ ଚାକିରି ଆଉ ଅଛି । ବାହା ହବାକୁ ଦୁଇଟି ଝିଅ । ବୁଢ଼ୀ ମରିଯାଇନି ଯେ ତରି ଯାଇଛି । ମୋ କଥା ତମକୁ କ'ଣ ଅଜଣା ମା' । ଯେ ବାଳୁଙ୍ଗା ଦି'ଟାରୁ ଗୋଟେ ହେଲେ କାହାକୁ ଲଗେଇଦବ ମା.... ।'' ଶମ୍ଭୁର ସମୁଦାୟ କଥାକୁ ବୋଧହୁଏ ସଠିକ୍ ଗୁରୁତ୍ୱ ଦେଇ ରୀତା ଦେବୀ ଶୁଣିପାରିଲେ ନାହିଁ ।

ଆଉ ଦିନେ । ରୀତା ଦେବୀ ପୂର୍ବ ସ୍ଥାନରେ ନିଜର ମେଟାଲ ବୋର୍ଡ ନାମ ଫଳକ ଲଗାଉଥା'ନ୍ତି । ଅପହୃତ ସାମ୍ରାଜ୍ୟର ପୁନରୁଦ୍ଧାର ଓ ସିଂହାସନରେ ଅଭିଷେକର ଗୌରବ ତାଙ୍କର । ମୃଦୁହାସ୍ୟ ସହ ଚାରିଆଡ଼କୁ ଅନାଉଥାଆନ୍ତି । ସମ୍ଭବତଃ କେହି ତାଙ୍କୁ ପାପାବିଷ୍ଟ ଦୃଷ୍ଟିରେ ଦେଖୁ ନାହାନ୍ତି ଆଉ ।

''ମା' ମୋ କଥା ଟିକେ କହିଲନି ।'' ମଝି ଦରିଆରୁ କୂଳ କେତେ ଦୂର, ଠଉରେଇ ନ ପାରିବାର ଅସହାୟ ଚାହାଣି ଶମ୍ଭୁର ଟାକୁଆ ଗାଲ ଓ କୋରଡ଼ ଗାତ ପରି ଆଖି ଦୁଇଟିରୁ ଜଣାପଡ଼ିଯାଉଥାଏ ।

ଦୟାମୟୀ ରୀତା ଦେବୀ କହିଲେ, ''ଶମ୍ଭୁରେ, ମନ୍ତ୍ରୀ ଭାରି ରାଇଟ୍ ଲୋକ । ସେ କ'ଣ ଶୁଣିବେ ? ତୁ ଗୋଟେ କାମ କର, ଖଣ୍ଡଗିରି ବାବାଙ୍କୁ ଏ ଶହେ ଟଙ୍କାଟି ଦେବୁ । ଘରୁ ଫଳ କିଛି ନେଇଯା । କହିବୁ, ମା' ପଠେଇଛନ୍ତି । ମୋ ତରଫରୁ ତାଙ୍କୁ ପ୍ରଣାମ କରିବୁ । ମୁଁ ଟିକେ ମନ୍ତ୍ରୀଙ୍କ ସାଙ୍ଗରେ ଚିଲିକା ଯାଉଛି । ସେଠି ଦୁଇ ତିନି ଦିନ ଅଫିସ୍ କାମ । ନ ହେଲେ ନିଶ୍ଚୟ ବାବାଙ୍କୁ ଦର୍ଶନ କରିବାକୁ ଯାଇଥା'ନ୍ତି ।''

''ମା', ମୋ କଥା ସେଇଠି ହେଲେ ଟିକେ ନିରୋଳାରେ କହନ୍ତନି ?'' ଶମ୍ଭୁର ଏହି ଅସହାୟ ଅଳି କାର୍ କବାଟ ବନ୍ଦ ହେଉଥିବା ଶବ୍ଦ ସହିତ ମିଳାମିଶା ହୋଇ ହଜି ଯାଇଥିଲା ।



# ଯୋଦ୍ଧା

**ଶୁ**ଣିଲୁ ।

ବ୍ରହ୍ମାନନ୍ଦ ବାବୁଙ୍କୁ ଏଡ଼େ ଦମ୍ଭ ବହପରେ କିଏ ଡାକି ପାରିଲା ଟି ? ଆଚମ୍ବିତ କଥା । ଇଏ ବି କାହା ସାଙ୍ଗରେ ଗପସପ ହେଉଛନ୍ତି । ମଝିରେ ମଝିରେ କୁମ୍ଭାଟୁଆ ପରିକା ଆଖି ଲାଲ୍ ପଡ଼ିଯାଉଛି । ମୁହଁ ରଙ୍ଗା । ଉଦାସ ହୋଇପଡୁଛନ୍ତି । ବହପ ବି ଦେଖାଉଛନ୍ତି । ମୁଚୁକୁନ୍ଦିଆ ହସ ବି । ସତେ ଯେମିତି ଭୋଦେଇ ଆକାଶର ଚପଳ ଚନ୍ଦ୍ରମଣ୍ଡଳ । ଅବଶ୍ୟ ତାଙ୍କ ଆଚରଣରେ ଏଗୁଡ଼ିକ ବିଚିତ୍ର ନୁହେଁ । ଯାଠୁଁ ବଡ଼ ବଡ଼ କାରନାମା ସେ ଦେଖେଇ ଜାଣନ୍ତି ।

କିନ୍ତୁ ଏ ଗପସପର କ୍ଷେତ୍ରଟା ଏକ୍‌ଦମ୍ ନିଆରା ଜଣାପଡୁଥାଏ ।

ଆରେ ଗେଡ଼, ଫୁରସତ୍‌ରେ ସବୁ ହେଜିପକା । ମନ ହାଲ୍‌କା ହେବ । କେବେ ଭାବିଛୁ, କେମିତି ଲାଗୁଥିଲା ତୋ' ଦିନଗୁଡ଼ାକ ? ସତର ପୂରିବା ଯାକେ ତୁ ବାପ ଦାଦିଙ୍କ ସାଙ୍ଗରେ ବିଲ କାମ କରୁଥିଲୁ । ଗାଁ ପିଲାଙ୍କ ସାଙ୍ଗରେ ବିରି ଛୁଇଁ, ଚଣା ଛୁଇଁ ପୋଡ଼ି ଖାଉଥିଲୁ ହିଡ଼ କଡ଼ରେ, ବୁଦା ମୂଳରେ । ତିଖ ଅତଡ଼ା ଉପରୁ ସିଧା ପାଣିକି ଡେଇଁ ସମବୟସ୍କମାନଙ୍କୁ ଚକିତ କରିଦେଉଥିଲୁ । ଯୋର କୂଳ କିଆବୁଦା ଆଡୁଆଳରେ ଲୁଚିଲୁଚି ମାଇପୀ ତୁଠର ଫୁଙ୍ଗୁଳା ଯୁବତୀମାନଙ୍କୁ କେନେ ତନ୍ମୟ ହୋଇ ଅନୋଉ ନ ଥିଲୁରେ । ମନେ ମନେ ସେମାନଙ୍କ ମୁକୁଳା ବା ଜଳ ଜଡ଼ିତ ବ୍ରହ୍ମାଣ୍ଡ ସୁନ୍ଦରୀ ତନୁ ଜାନୁ ଯୌବନକୁ କି ନାରଖାର ନ କରିଛୁଟି ।

ଛାଡ଼ ବେ । କୋଉ କାଳର କଥା । ଏଯାଏଁ ମନେ ଅଛି ନା ?

ଭୁଲିବା କ'ଣ ଏଡ଼େ ସହଜ କିରେ ବ୍ରହ୍ମାନନ୍ଦ ? ବରଂ ମନେରଖିବା ସହଜ । ଟିପା ଖାତା ଖେଳେଇ ଦେଲେ ସବୁ ଛାଁକୁ ଛାଁ ଆସିଯାଏ । ତୁ ଇନ୍ଦ୍ର ଚନ୍ଦ୍ରଙ୍କୁ ଆତଯାତ କରାଇ ପାରୁଛୁ । ହଉ ହେଲା । ତା'ବୋଲି ତୁ ଭାବୁଛୁ, ଭୁଲିବାର ସାଧନା ଶିଖିଯାଇଚୁ ? ତାହା ସମ୍ଭବ ନୁହେଁ ବୋଲି ସିନା ଆତୁର କବିଟିଏ ଠାକୁରଙ୍କୁ ମିନତୀ କରୁଥିଲା, ''ଦେ' ମୋତେ ବାଇଆ କରି ।'' କହିଲୁ କହିଲୁ, ଭୁଲିବାର କି କୌଶଳ ତୋତେ ଜଣା ଅଛି ?

ତୁ ବୁଝୁନୁରେ ବ୍ରହ୍ମାନନ୍ଦ । ମୋତେ ତୁ ତା’ ହେଲେ ଡାକିଲୁ କାହିଁକି ? ମୁଁ କ’ଣ ତୋ’ ପ୍ରାଇଭେଟ ସେକ୍ରେଟାରୀ ଯେ ତେଲ ମାରିବାକୁ ପ୍ରଶଂସା ଗପିବି ?

ହଉ କ’ଣ କହ ।

ଥରେ ତୁ ମାଇପୀ ତୁଠକୁ ଅନେଇ ଅନେଇ ତୋ ଢଙ୍ଗରେ କୋଉଠି ଚୁମ୍ବନ ଦେଉଦେଉ କିଆ ମୂଳର ଜନ୍ଦା କାମୁଡ଼ାରେ ତୋ ଓଠ ଫୁଲି ଘୁଷୁରି ମୁହଁ ପରିକା ପଦାକୁ ବାହାରି ପଡ଼ି ନ ଥିଲା କି ? ନେଳିଆ ତତେ ଠେଲି ଦେଲା, ଓସ୍ତ ଗଛ ଶିଅରେ ବାଜି ତୋ ମୁହଁ ସେମିତି ହୋଇଥିଲା—ଏଇଆ ବୋଉକୁ କହି ନ ଥିଲୁ ? ନେଳିଆ-ବୋଉ ନିଆଶ୍ରା ବିଧବା । ତୋ ବାପ ଦାଦି ତାକୁ ବାଡ଼େଇବାକୁ ଚଢି ଯାଇ ନ ଥିଲେ କି ? ଏକଇରବଳା ବିଶିକେଶନର ସତକୁ ପରତେ ନ ଯାଇ ତା’ ମା’ ତାକୁ ନିର୍ଦ୍ଦୟ ପ୍ରାୟ କେତେ ବାଡ଼େଇ ନ ଥିଲାଟି ? କୋଉ ମା’ ପରଠାରୁ ମାଡ଼ ଖାଇବାକୁ ନିଜ ଛୁଆକୁ ଛାଡ଼ି ଦିଏ ଯେ ? ସେଇ ଦୃଶ୍ୟ ଟିକେ ମନେ ପକା । କାତର ନେଳିଆର ସବୁ ସତ ତୋ ଅସତ୍ୟର ସ୍ପର୍ଦ୍ଧା ସାମ୍ନାରେ ଗେମଣା ହୋଇଯାଇ ନ ଥିଲା କି ? କହିଲୁ ଦେଖି, ଏଇ କଥାଟିକୁ ତୁ କୋଉ ବିଦ୍ୟା ଜରିଆରେ ଭୁଲିପାରିବୁ ?

ବ୍ରହ୍ମାନନ୍ଦ ବାବୁ ଆସ୍ଥାଶୂନ୍ୟ, ଅବସାଦମୟ ଦେଖାଯାଉଥିଲେ ।

ଡିଗ୍ରୀକୁ ଜ୍ଞାନ, ଅର୍ଥକୁ ସୁଖ, ରତିକୁ ପ୍ରେମ ବୋଲି ଭାବି ଯେତେ ଉତ୍ପାତ ତୁ କରିଚୁ, ଏବେ କହିଲୁ, ସେଗୁଡ଼ିକ ତୋ’ ଭାବିଲା ପରି ସତରେ ସେଇଆ କି ?

ବ୍ରହ୍ମାନନ୍ଦ ଫାଷ୍ଟ ଡିଭିଜନ୍‌ରେ ମାଟ୍ରିକ୍ ପାଶ୍ କରିଥିଲେ । ପାଖ ଗାଁ ର ପୋଷ୍ଟମାଷ୍ଟର ପାଣ୍ଡୁ ପ୍ରଧାନ ତାଙ୍କ ଜୀବନ ପରିଧି ଭିତରକୁ ନ ପଶିଥିଲେ ସେ ଯାଇତାଇ ଚାକିରି ଖଣ୍ଡେ ବା ଅପେକ୍ଷା କରିକରି ଟୁଣ୍ଡୁକା ରାଜନୀତି କରିପାରିଥା’ନ୍ତେ । ବର୍ଷକୁ ଥରେ ମିଳୁଥିବା ମାସିକ ପଚିଶ ଟଙ୍କିଆ ଷ୍ଟାଇପେଣ୍ଡ୍ ପାଇବାକୁ ସେ ଯୋଗ୍ୟ ହୋଇଥିଲେ ସୁଦ୍ଧା, ସେତିକି ଅର୍ଥରେ ସେ ଉପର ପାଠ ପଢ଼ିପାରି ନ ଥାନ୍ତେ । ବାପ ଦାଦିଙ୍କର ସାମର୍ଥ୍ୟ ନ ଥିଲା । ଏପରିକି, ଜମି ବିକ୍ରି କରି ମଧ୍ୟ ନୁହେଁ । ପାଣ୍ଡୁ ପ୍ରଧାନଙ୍କୁ ସେ ଉଦାର ଭାବୁ ନ ଥିଲେ; ଆଶାୟୀ ବୋଲି ସନ୍ଦେହ କରୁଥିଲେ ।

ମାଳତୀ । ପାଣ୍ଡୁ ବାବୁଙ୍କର ଏକ ମାତ୍ର ସନ୍ତାନ । ପୁଅମାନଙ୍କ ଭାଗ୍ୟ ବା ଝିଅମାନଙ୍କ ରୂପ କେମିତି ବଦଳିଯାଏ, ଏପରି କୌଣସି ସଠିକ୍ ଆଇଡିଆ ନ ଥିବା

ବ୍ରହ୍ମାନନ୍ଦ ତଥାପି ଭାବୁଥିଲେ—କେଡ଼େ ସୁନ୍ଦର ନ ହେବ ଟି ସିଏ । ସିଏ ମୋର ହେବ ? ପତ୍ରପୁଟୀ ମଧୁର ଚିନ୍ତାଟିଏ । ନିଜ ମନର କୋମଳ ସ୍ୱପ୍ନମାନଙ୍କ ଇତସ୍ତତଃ ବିଚରଣ ସହିତ ପାଣ୍ଡୁବାବୁଙ୍କ ଆପେକ୍ଷିକ ଇଚ୍ଛାର ରତିକ୍ରୀଡ଼ାଯୋଗୁ ଏବଂ ମାଳତୀ ପରି ଏକ ଅପରୂପାକୁ ନିଜ କମନୀୟ କଳ୍ପନାର ଫଗୁଣ ଫୁଲରେ ଶୁଆଇବାକୁ ହେଲେ ସେ ବେଶି ପାଠ ପଢ଼ିବା ଅଲବତ ଆବଶ୍ୟକ ।

ସେ ପାଠ ପଢ଼ିଲେ । କାହାଯୋଗୁ ? ପାଣ୍ଡୁବାବୁଙ୍କ ରୂପାନ୍ତରିତ ଇଚ୍ଛା ସାକାର କରି ମାଳତୀକୁ ସମ୍ପୂର୍ଣ୍ଣ ଅଧିକାର କରିବାକୁ, ନା ବାପା ଦାଦିଙ୍କ ଅସହାୟତାର ଅନୁପୂରକ ସାଜିବାକୁ, ନା ନିଜର ପୌରୁଷ ପ୍ରମାଣ କରିବାକୁ ? ସିଦ୍ଧାନ୍ତରେ ପହଞ୍ଚିବା ପାଇଁ ଅବକାଶ ସେ ପାଇଲେ ନାହିଁ । ଚିନ୍ତା ଅଡୁଆ ତଡୁଆ । କାରଣ, ମୂର୍ତ୍ତିକୁ ଯଦି ତୁଳନା କରାଯାଏ, ତାହା କେବଳ ଆଉ ଗୋଟିଏ ମୂର୍ତ୍ତି ସହିତ । ଯେଉଁଥିରୁ ତାହା ତିଆରି ହୋଇଥିଲା, ସେପରି ପଥର ବା ମାଟି ସହିତ ମୋଟେ ନୁହେଁ । ଆଉମାନଙ୍କ ଠାରୁ ସେ ଅଲଗା ହେବା ପରେ, ତୁଳନା ଅସମ୍ଭବ ହୋଇପଡ଼ିଲା ।

କଲେଜ ଏବଂ ଇଞ୍ଜିନିୟରିଂ ପଢୁଥିବାବେଳେ ବ୍ରହ୍ମାନନ୍ଦ ଗାଁକୁ ମଝିରେ ମଝିରେ ଆସୁଥିଲେ । ତାଙ୍କ ସହିତ ଏଣିକି ମିଶିଯାଇଥିବା ଗାମ୍ଭୀର୍ଯ୍ୟଗୁଡ଼ାକ ବାରି ହୋଇ ପଡୁଥିଲା । ଭାବଟା ଯେମିତି ମତେ ସମସ୍ତେ ଅନାଅ—ମୁଁ କାହାରିକୁ ଅନେଇବା ଦରକାର ନାହିଁ । ସାମାଜିକ ସ୍ତରରେ କେବଳ ପୋଷ୍ଟମାଷ୍ଟରଙ୍କ ଘରଟା ତାଙ୍କୁ ସମକକ୍ଷ ଲାଗୁଥିଲା । ମାତ୍ର ସେଠାକୁ ସେ ଯାଉ ନ ଥିଲେ । ପ୍ରବୃତ୍ତିପାଇଁ ନିବୃତ୍ତିର ପରାକାଷ୍ଠା ? ହଁ, ପ୍ରାୟ ସେଇଆ ।

ସେତେବେଳକୁ ମାଳତୀ କେତେ ଲୋଭନୀୟା ନ ହୋଇଥିଲା ଟି ! ପାଦଠାରୁ କଟି-କବରୀ ପର୍ଯ୍ୟନ୍ତ ତା'ତନୁରେ ସ୍ଥପତିର ମାପ୍‌ଚୁପ୍ ସ୍ତୂପ-ସ୍ତର, ନିର୍ମାଣର ଯାବତ୍ ଶ୍ଳୀଳ କଳା । ବିଳସିତ ବର୍ଣ୍ଣ । ଆକାଶ ଠାରୁ ଗହୀରିଆ ଆଖି । ସିଏ ତୃଷ୍ଣା, ସେଇ ହିଁ ଜଳ । ମୋ-ଶବ୍ଦର ଅପୂର୍ବ ମାୟା ସହିତ ମାଳତୀ ଆପେ ଆପେ ଯୋଡ଼ି ହୋଇଯାଉଥିଲା ।

ଇଞ୍ଜିନିୟରିଂରୁ ଆଇ.ଏ.ଏସ୍. ହୋଇଥିବାଯୋଗୁ ତାଙ୍କ ସମୟରେ ସେ ଏକ ବିରଳ ସଂରକ୍ଷଣଯୋଗ୍ୟ ବ୍ୟକ୍ତିତ୍ୱରେ ପରିଣତ ହୋଇପଡ଼ିଥିଲେ । ପରିବେଶ ତାଙ୍କଠାରୁ ଅନୁରୂପ ସଦ୍‌ଗୁଣ, ଧୀ-ଶକ୍ତି ଉଣ୍ଡାଳୁଥିଲା । ଏପରି ଜନ୍ମ ଅକସ୍ମାତ୍ ଏବଂ ପୌରୁଷ କ୍ୱଚିତ୍ ବୋଲି ବାରମ୍ବାର ଘୋଷଣା କରିଚାଲୁଥିଲା । ମହକର ବି ମାୟା ଥାଏ ।

ଅକ୍ଷବୃତ୍ତରୁ ଅନନ୍ତ ଅନ୍ତରୀକ୍ଷର ଗତିପଥ ଯେତେ ଅଜଣା ହେଉ ପଛେ, ତହିଁରେ ଜିଜ୍ଞାସା ଓ ସନ୍ଧାନ ଯେମିତି ହେଲେ ବି ଅନୁବୃତ୍ତିକ ହୋଇ ପାରେନା । ଅମିନ ନିର୍ଦ୍ଦେଶରେ ଜରିବ ଧରି ମାପ କରୁଥିବା ଚେନ୍‌ମେନ୍ କାହିଁ ଭଲା ଅନେଇ ରହିବ ଗାଁ ମୁଣ୍ଡ ବରଗଛ ମୂଳେ ରଖିଥିବା ନିଜ ସାଇକେଲଟିକୁ ?

ବ୍ରହ୍ମାନନ୍ଦ ଗୋଟିଏ ଗୁରୁତର ଜଞ୍ଜାଳରୁ ନିଜ ବୁଦ୍ଧି ବଳରେ ମୁକୁଳି ଯାଇଥିଲେ । ତାହା ଥିଲା ମଧ୍ୟ ଏକ ବିଜୟ । ତାଙ୍କୁ ବୈବାହିକ ସୂତ୍ରରେ ନିଜର କରିବାପାଇଁ କେତେ ଧନୀ, ଶିଳ୍ପପତି, ଅଫିସର ନିଜ ନିଜ ଫିକର ବାଢ଼ିଥିଲେ । ଗାଉଁଲି ବ୍ରହ୍ମାନନ୍ଦ ଏହି କାରଣରୁ ଆଦବ୍ ଅଭ୍ୟାସରେ ସୋସିଆଲାଇଟ୍ ହୋଇଗଲେ ପଛେ, କାହାରି ଫାନ୍ଦରେ ପଡ଼ି ନଥିଲେ । ଅନେକ କୁମାରୀଙ୍କ ସହିତ ଅବାଧ ସମ୍ପର୍କ ରଖି, ବାପାମାନଙ୍କ ତାଲିକାକୁ ସେ ମନେ ମନେ ସଂକ୍ଷିପ୍ତୀକରଣ କରିଚାଲିଲେ । ଶେଷକୁ ରହିଥିଲେ ଦୁଇ । ଏଇ କ୍ଷେତ୍ରରେ ଖୁବ୍ ସଙ୍କଟରେ ପଡ଼ିଯାଇଥିଲେ ସେ । କାରଣ, ଜଣେ ଥିଲେ ଅତିରିକ୍ତ ମୁଖ୍ୟ ଶାସନ ସଚିବ । ଆଉ ଜଣେ, କମିଶନର୍ ପାହ୍ୟାର ।

କ୍ୟାଡ଼ର ଲିଷ୍ଟ ବ୍ରହ୍ମାନନ୍ଦଙ୍କୁ ବାଟ ବତେଇଦେଲା । ଅତିରିକ୍ତ ମହାଶୟ ଅତ୍ୟନ୍ତ ସୁସ୍ଥ ବିଚାରରେ ବ୍ରହ୍ମାନନ୍ଦଙ୍କ ସପକ୍ଷରେ ଗୋଟିଏ ସରକାରୀ ସିଦ୍ଧାନ୍ତ ଗୃହୀତ କରାଇ ପାରିଥିଲେ । ତାହାହେଲା, ଇଞ୍ଜିନିୟରିଂ ପୃଷ୍ଠଭୂମିଯୋଗୁ ଯଥାସମ୍ଭବ ସେ ନିର୍ମାଣ ବିଭାଗମାନଙ୍କରେ ଅବସ୍ଥାପିତ ହେଲେ ଜନମଙ୍ଗଳ ରାଷ୍ଟ୍ରରେ ଗଣତନ୍ତ୍ର ଉପକୃତ ହେବ ।

କ୍ୟାଡର ଲିଷ୍ଟ ବତାଉଥିଲା ଯେ ଅତିରିକ୍ତ ମହାଶୟ ଆଉ ଛ'ମାସ ପରେ ଅବସର ନେବେ ଏବଂ ଅନ୍ୟ କନ୍ୟା-ପିତାଙ୍କର ଏକ ନିରାମୟ କ୍ଷମତାସମ୍ପନ୍ନ ଦୀର୍ଘ ଭବିଷ୍ୟତ ରହିଛି ।

ସେ ରାଜଧାନୀରେ ଅବସ୍ଥାପିତ ନ ହୋଇଥିଲେ ସୁଦ୍ଧା ସୁନ୍ଦରଭାବେ ଘଟଣାଟିକୁ ତୁଲାଇ ନେଲେ ।

ସୁଶୋଭନ ଚାଟାର୍ଜିଙ୍କ କନ୍ୟା ବ୍ରହ୍ମାନନ୍ଦଙ୍କ ଧର୍ମପତ୍ନୀ ହେଲାବେଳକୁ, ବାପ ଦାଦି ମିଶି ଇଜମାଇଲ ସମ୍ପତ୍ତିରୁ ସବୁଠୁଁ ବଡ଼ ଅଠର ଗୁଣ୍ଠିଆ ଚକ ଖଣ୍ଡିକ ପରିବାରର ସବୁଠୁଁ ବଡ଼ ଖୁସିପାଇଁ ବିକ୍ରି କରିଦେଲେ । ପୁଅ ଯଦି ଯୋଗ୍ୟ ହେଲା ଧନ କିମ୍ପାଇଁ ସଞ୍ଚୁ, ପୁଅ ଯଦି ଅଯୋଗ୍ୟ ହେଲା ଧନ କିମ୍ପାଇଁ ସଞ୍ଚୁ—ଏହିପରି ଏକ ନ୍ୟାୟରେ । ରାଜଧାନୀ ସହିତ ଗାଁ ର ଉଚିତ ସଂଯୋଜନା ବନା ବାରିକଦ୍ୱାରା ସମ୍ଭବ

ହୋଇପାରିଥିବାଯୋଗୁ ସେଠି ଉତ୍ସବାନୁଷ୍ଠାନ—ଜାଇରଗଡ଼ାଠାରୁ ଚଉଠି, ଅଷ୍ଟମଙ୍ଗଳା ଏବଂ ଚନ୍ଦ୍ର ବନ୍ଦାପନା ପର୍ଯ୍ୟନ୍ତ—କୌଣସିଥିରେ ସାମାନ୍ୟତମ ଆନୁଷ୍ଠାନିକ ଅବହେଳା ପରିଲକ୍ଷିତ ହୋଇ ନ ଥିଲା । ଅବଶ୍ୟ ଗୋଟିଏ କୈଫୟିତ୍ ନିଜ ମନକୁ ଦେଇ ନ ପାରି ବୋଉ ଏବଂ ଖୁଡ଼ୀ କାନ୍ଦୁଥିଲେ । ବାପ ଦାଦିଙ୍କ ମନ କଥା କହି ହେବ ନାହିଁ, କିନ୍ତୁ ନିଇତି ଯା'ଆସ କରୁଥିବା ବନା ବାରିକଠାରୁ ସେମାନେ ଯେମିତି ଶୁଣୁଥିଲେ, ଗାଁ ସାରା ସେମିତି ପ୍ରଚାର କରୁଥିଲେ ଯେ କୌଣସି ଦିନ ପୁଅ-ବୋହୂ ଆସିପାରନ୍ତି । ଶୁଣିବାଲୋକେ ଅକ୍ଳେଶରେ ବୁଝିପାରୁଥିଲେ । କାରଣ, ଏ ପୁଅ ଯାଇତାଇ ନୁହେଁ ବା ବୋହୂ ବି ଯାଇତାଇ ହୋଇ ନ ଥିବ । ବିଶଦ ସୂଚନା ସଂପ୍ରସାରଣ କ୍ଷେତ୍ରରେ ବନା ବାରିକ କମାଲ୍ କରିଦେଇଥିଲା । ସେ ଖାଲି କହିକହି, ବରମା ଓ ଭାର୍ଯ୍ୟାଙ୍କୁ ଗାଁରେ ଚାଲ୍‌ବୁଲ୍ ହେବାପରି ଦେଖାଉଥିଲା ଯେମିତି ।

ବ୍ରହ୍ମାନନ୍ଦଙ୍କ ସୌଜନ୍ୟରୁ ପତ୍ନୀ ତପତୀ ଚାଟାର୍ଜି ଯଦିଓ ଫାଦର-ମଦର ଇନ୍ ଲ' ଏବଂ ଅଙ୍କଲ୍-ଅଣ୍ଟ୍‌ଙ୍କୁ ଫଟୋରେ ଦେଖିପାରିଥିଲେ, ଆନ୍‌ସେଷ୍ଟ୍ରାଲ୍ ଭିଲେଜ୍ ମଲିକାଶପୁରକୁ ସେ ଥରଟିଏ ବି ଆସିବାର ସୁଯୋଗ ପାଇଲେ ନାହିଁ ।

ଘର ଓ ଗାଁ କଥା କେତେ ମନେ ରଖିଛନ୍ତି । ଗାଁ ଏହିପରି ପ୍ରଶଂସାମୁଖର ହେବା ଅବକାଶ ଆସିଲା ଯେତେବେଳେ ତପତୀ ଏକ କନ୍ୟାର ମାତା ହେଲେ । କନ୍ୟା ଜନ୍ମ ସମ୍ବାଦ ଟେଲିଗ୍ରାମ୍ ଯୋଗ ଆସିଥିଲା । କେହି ତାହା ପଢ଼ି ସଠିକ ଖବର ଶୁଣାଇବା ପୂର୍ବରୁ ବାପ-ଦାଦି-ମା'-ଖୁଡ଼ୀ ଟେଲିଗ୍ରାମ୍ ସହିତ ଯୋଡ଼ା ନାନା ଆତଙ୍କରୁ ଉଦ୍ଧାର ପାଇବାପାଇଁ ନିଜ ମନର ଠାକୁର ଠାକୁରାଣୀଙ୍କ ପାଖରେ ମାନସିକ ସଂଲଗ୍ନ ନିଜ ନିଜ ନିବେଦନ ସବୁ ଅଜାଡ଼ି ପକାଇଥିଲେ । ଝିଅର ଏକୋଇଶା ଦିନ, ତିନିଗାଁ ଛାଡ଼ି ଅବସ୍ଥିତ ହରିପୁର ଠିକାଦାର ରାଧୁ ରାଉତ ଗୋଟିଏ ଉଇଲେକ୍ସ ଜିପ୍‌ରେ ଖଜା ଗଜା, ଖିରମୋହନ, କମଳା ଭର୍ତ୍ତି କରି ପହଞ୍ଚିଲେ ଏବଂ ସବୁ 'ବରମା ପଠେଇଚି' ବୋଲି କୁହନ୍ତେ, ବୋଉ ଖୁଡ଼ୀ ଗାଁ ସାରା ଘର ଘର ବୁଲି ସବୁ ବିତରଣ କରିଦେଲେ ।

ଗୋପୀନାଥ, ବଟମହାପୁରୁଷ ଗାଦି, ଗ୍ରାମଦେବତୀ, ମୁକ୍ତେଶ୍ୱର ମହାଦେବଙ୍କ ପାଇଁ ଭୋଗ, ଏପରିକି ହାଡ଼ିଆନ୍ନାଙ୍କ ବିଦାକି ମିଶେଇ, ଠିକାଦାର ଯେତେବେଳେ 'ବରମା ପଠେଇଚି' କହି ଚାରି ଇଞ୍ଚ ଚଉଡ଼ାର ଖଣ୍ଡିଏ ଶହେ ଟଙ୍କିଆ ନୋଟ୍ (ଏବେ ସେଇ ସାଇଜ୍ ତେଷ୍ଠରି ମିଲିମିଟର ବା ତିନି ଇଞ୍ଚରୁ କମ୍) ଧରେଇ ଦେଲେ, ସମସ୍ତେ ବ୍ରହ୍ମାନନ୍ଦଙ୍କ ଦ୍ୱାରା ପ୍ରକଟିତ ଜନ୍ମ-ଜନ୍ମମାଟି ପାଇଁ ମମତ୍ୱ, ସ୍ମୃତି ଏବଂ ଆତ୍ମୀୟତାରେ ଅଭିଭୂତ ହୋଇପଡ଼ିଲେ । ସେଇ ଅବକାଶରେ ବୋଉ, ଖୁଡ଼ୀ ମିଶି ଦାଣ୍ଡ ଦରଜାର

ପଛ ପଟୁ ପଦା ପିଣ୍ଡାରେ ବସିଥିବା ଠିକାଦାରଙ୍କୁ କହିଲେ, ''ବାବୁ, ବୋହୂକୁ ଟିକେ ଆଣିବା ଲାଗି ବରମାକୁ କଇବ । ଆଉ କଇବ ଆମ ନାତୁଣୀ ନାଁ ମଙ୍ଗଳା ଦେବେ ।''

ବୋଉ ଦେହ ଯେତେବେଳେ ଅତି ସାଂଘାତିକ ହେଲା, ସେତେବେଳେ ବ୍ରହ୍ମାନନ୍ଦ ସପରିବାର ଦିଲ୍ଲୀରେ । ଯେତେ ଇଚ୍ଛା ସେତେ ଟଙ୍କା ପଠାଇଛନ୍ତି । ଚାଷୀ ଘର, ଗରିବ ନ ଥିଲେ । ମା' ବାଉଳି ହୋଇ ବରମାକୁ ଖୋଜିଲେ । ଦୁଇ ଥର ଟେଲିଗ୍ରାମ୍ ଗଲା । ପୁଣି ରାଧୁ ରାଉତ କଣ୍ଟ୍ରାକ୍ଟର୍ । ବୋଉର ଏକା ଜିଦି, ସେ ଭିଟାମାଟି ଛାଡ଼ିବ ନାହିଁ । ମାନିବାକୁ ପଡ଼ିବ । ରାଧୁ କଣ୍ଟ୍ରାକ୍ଟର୍ ନିପଟ ମଫସଲ ଗାଁରେ ବି ସହରରୁ ଡ଼ାକ୍ତର, ସରଞ୍ଜାମ ଆଣି ଅତ୍ୟାଧୁନିକ ଚିକିତ୍ସା ବ୍ୟବସ୍ଥା କରିଦେଲେ । କହିବାକୁ ଗଲେ, ଗାଁରେ ସେମିତିକା ଚିକିତ୍ସା ବରମା-ବୋଉ ପୂର୍ବରୁ କେହି ପାଇ ନ ଥିଲେ ।

ଗାଁ ଲୋକେ ଚକିତ ହେଉଥିଲେ । ପୁଅ ସେତିକି ଯୋଗ୍ୟ, ସେତିକି ବଡ଼ ହୋଇଛି ବୋଲି ସିନା !

ବାପ-ଦାଦିଙ୍କ ପ୍ରାଣ ଘୁମୁରୁଥାଏ । ହାତୀ ବନସ୍ତରେ ବୁଲୁଥିଲେ ବି ରାଜାଙ୍କର—ଏଇ ଆଶ୍ୱାସନା ଆଉ ସେତେ ଦମ୍ଭିଲା ଲାଗୁ ନ ଥାଏ ।

ସାହିର ଖଡୁତା ପୁଅ ଭାଇ ବୋଉର ମୁଖାଗ୍ନି ଦେଇଥିଲା । ବ୍ରହ୍ମାନନ୍ଦ ତା'ପ୍ରତି ଖୁବ୍ କୃତଜ୍ଞ । ରାଜ୍ୟକୁ ଫେରିବା ପରେ ପରେ ସେ ମହିଆକୁ ଏନ୍.ଏମ୍.ଆର୍.ରେ ରଖି ମୁକରିର ବି କରିଦେଲେ । ଋଣ-ମୁକ୍ତ ସେ । ମହିଧରର ଗାଁରେ କୋଠା, ସହରରେ କୋଠା । ଭିଜିଲାନ୍ସବାଲାଏ ଦି'ଦି' ଥର ଆଖେଇଲେ । କମିଶନରଙ୍କ ଭାଇ । କିଛି ହେଲାନି ତା'ର । ବହୁତ ସମ୍ପତ୍ତି ସେ ଉପାର୍ଜନ କରିଥିବ । କରୁ, ଭଲ ପିଲାଟିଏ । ବୋଉର ମୁଖାଗ୍ନି ଦେଇଛି । ଠିକ୍ ଅଛି । ତା' ବଦଳରେ ଯଥେଷ୍ଟ ପାଇଛି ବି ସିଏ ।

ମହିଧରକୁ ବ୍ରହ୍ମାନନ୍ଦ କହିଥିଲେ, ''ଆମ ଗାଁ ଘରଟା ପକା କରିଦେ'ରେ । ବାପା ହେରିକା ହଇରାଣ ହେଉଥିବେ । ପଇସାପତ୍ର କଥା ମୁଁ ବୁଝିବି ।''

ମହିଆ ହଁ ହଁ ତ କଲା । ନିରୋଳାରେ କାନ୍ଦି ଥିଲା । ପଛରେ ଆସି କହିଲା, ''ବଡ଼ାପା' କହିଲେ, କ'ଣ ହବ ରେ ? ପାଁ ଶେଣିଆ ଘର, ଏବେ ବି ଦମ୍ଭିଲା ଅଛି ।''

କଥାଟା ଯେମିତି ଉଠିଥିଲା, ସେମିତି ହଜିଗଲା ।

ତପତୀ ଆଂଶିକଭାବେ ଶାଶୁ ଖୁଡ଼ୀ ଶାଶୁଙ୍କ ମନ ରକ୍ଷାପାଇଁ ବା ସ୍ୱାଧୀନ ବିଚାର ଯୋଗୁ, ନିଜ କନ୍ୟା ଏକମାତ୍ର ସନ୍ତାନର ନାଁ ଦେଇଥିଲେ, ବ୍ରତ୍ ମେରେଲିନ୍ । ଡାକ ନାଁ, ରିଲି । ମେରେଲିନ୍‌ର ମ କ'ଣ ମଙ୍ଗଳାରୁ ? ହୋଇପାରେ । ଡ୍ୟାଡି, ମାମୀଙ୍କ ନାଁରେ ପ୍ରଥମ ଅକ୍ଷର, ବ୍ରତ୍ । ପ୍ରାଚ୍ୟ- ପାଶ୍ଚାତ୍ୟର ଅଦ୍ଭୁତ ମିଳନ । ତେଣୁ, ରିଲି ଦୁଇ ପୂର୍ବ ପିଢ଼ିର ପ୍ରତିନିଧିତ୍ୱ କରୁଥିଲେ ଅକ୍ଷରର ବାରୁଆଳିରେ । ଯଦିଓ ସାଂସ୍କୃତିକ ଭାବେ ସେ ଏକ ଭିନ୍ନ ସମୟ ଓ ସଂସ୍କାରର ହୋଇପଡ଼ିଥିଲେ ଛାଁ କୁ ଛାଁ । ରିଲିଙ୍କ ବ୍ୟବହାରରେ ପୁରୁଷାନୁକ୍ରମିକ ଚିନ୍ତନର ବ୍ୟବଧାନ ରହୁଥିଲା ସତ, ମାତ୍ର ସେଥିଯୋଗୁ ଡ୍ୟାଡି-ମାମୀ ଉତ୍ପୀଡ଼ିତ ହେଉ ନ ଥିଲେ । ଜ୍ଞାନ ଅନ୍ତତଃ ସାମାଜିକ ବ୍ୟବସ୍ଥିତି ଶିଖାଏ । ଅର୍ଥ ଲୋଭରେ ମଣିଷ ଯେତେ ଜାଲ୍ ନୋଟ୍ ତିଆରି କରିପାରେ, ଅର୍ଥ ତା'ଠୁଁ ବହୁ ଅଧିକ ଜାଲ୍ ମଣିଷ ସୃଷ୍ଟି କରିବାକୁ ସକ୍ଷମ — ଏହିପରି ଭାବନା ସହିତ ଜ୍ଞାନର ଢାଲିଆତି ଯେତେବେଳେ ମିଶିଯାଏ, ସେତେବେଳେ ଅସୁରଗୁଡ଼ାକ ଅବିକଳ ଠାକୁରପରିକା ଦେଖାଯାଆନ୍ତି ।

ଫେସିଆଲ, ହେୟାର ଡାଇଙ୍ଗ୍ ଆଦି ଜରିଆରେ ଯୌବନର ବାହ୍ୟ ପ୍ରଶଂସିତ ଯଶ ଅର୍ଜି ବଞ୍ଚୁଥିବା ମାମୀ, ଅନ୍ତର୍ଗତ ନାରୀସୁଲଭ ଚେତନାଯୋଗୁ, ନିଶ୍ଚୟ ବୁଝି ପାରୁଥିଲେ ବୟସର ମାନେ କ'ଣ ଏବଂ ଇନ୍ଦ୍ରଧନୁର ସାତ ରଙ୍ଗ ଯୋଡ଼ାଯୋଡ଼ି ହୋଇ ଏକା ସାଙ୍ଗରେ ଦେଖାଯାଉଥିଲେ ବି ପ୍ରତ୍ୟେକର ନାଁ କାହିଁକି ନିଆରା ନିଆରା ।

ପ୍ରାଥମିକ ଶିକ୍ଷାର କେତୋଟି ବର୍ଷ ବ୍ୟତୀତ ରିଲି ଦିଲ୍ଲୀରେ ପଢ଼ିଛନ୍ତି ଏବଂ ବଢ଼ିଛନ୍ତି । ପରେ ପରେ ଡ୍ୟାଡି ଜ୍ଞାତ ପରିସରରେ ରିଲି ସମ୍ପର୍କରେ ନାନା ପ୍ରକାର ସ୍କାଣ୍ଡାଲ୍ ଶୁଣୁଥିଲେ । ଏଇକଥା ନେଇ ଭାବନାବ ହେଲାବେଳେ ତପତୀ କହନ୍ତି, ''ଡିଅର୍, ଆଧୁନିକତା ଏକ ପ୍ରକାର ମାନସିକ ଦୃଷ୍ଟିକୋଣ । ଇଟ୍ ଟେକ୍‌ସ୍ ଏ ଲଟ୍ ଅଫ୍ ଟାଇମ୍ ଟୁ କଲ୍‌ଟିଭେଟ୍ । ଟ୍ରାଏ ପ୍ଲିଜ୍ ।''

ମୂର୍ଖ ପରମ୍ପରାର ଝୁମ୍ କାଳେ ଆଉରି ଛାଡ଼ିନି କି ? ବ୍ରହ୍ମାନନ୍ଦ ସତର୍କ ହୋଇଯାଆନ୍ତି ।

ସ୍କାଣ୍ଡାଲ୍‌ଗୁଡ଼ିକୁ ମଧ୍ୟବିତ୍ତ ଆଚରଣର ନୈତିକତା ବିଚାର ବୋଲି ଭାବିବା ସଙ୍ଗେ ସଙ୍ଗେ, ସେଥିରୁ ଦୁଇଜଣ ଯାକ ନିଜ ନିଜ ବାଟରେ ସାନ୍ତ୍ୱନା ପାଉଥା'ନ୍ତି । ନିଜ

ବୈବାହିକ ଜୀବନପାଇଁ ନିର୍ବାଚନ ଦାୟିତ୍ୱ ରିଲି ଏତଦ୍ୱାରା ନିଶ୍ଚୟ ନେଇପାରିବ। କଥିତ ଅଛୁଆଁ ଯୌବନ ? ମଲା ମିରିଗର ଶିଙ୍ଗପରି। ଡ୍ରଇଂରୁମ୍ ସଜାଯାଏ।

ଘଟଣା ପରେ ଭିନ୍ନ ମୋଡ଼ ନେଲା। ଡ୍ୟାଡି ଓ ମାମୀଙ୍କ ମନ ଭିତରେ ଆଧୁନିକତାର ପରିଭାଷା ସତ୍ୱର ବଦଳିବାକୁ ଆରମ୍ଭ କଲା।

ରିଲିଙ୍କୁ ଥରେ ମାମୀ ପଚାରିଲେ, ''ଡ୍ୟାଡି ଯେତେବେଳେ ଦିଲ୍ଲୀ ଯାଉଛନ୍ତି ତୋ' ନାଁରେ ବାଜେ ସ୍କାଣ୍ଡାଲ୍ ଗୁଡ଼ାଏ ଶୁଣୁଛନ୍ତି।''

''ମୁଁ କ'ଣ ଷ୍ଟାଚ୍ୟୁ ଅଫ ଲିବର୍ଟି ହୋଇଛି ଯେ ଡ୍ୟାଡି ଭାବୁଛନ୍ତି ମୋର ପ୍ୟାସନ୍ ନ ଥା'ନ୍ତା ବୋଲି ?''

''ମ୍ୟାରେଜ୍‌ପାଇଁ ତୋର ଯଦି ଚଏସ୍ ଥାଏ କିଛି ନ ଭାବି କହିଦେବୁ। ୟୁ ନୋ ହାଓ ଲିବରାଲ୍ ଉଇ ଆର୍।''

''ଦେଖ ମାମୀ, ଆଗାମୀ ଦୁଇ ବର୍ଷ ସକାଶେ ମୁଁ ମ୍ୟାରେଜପାଇଁ ରେଡ୍‌ଡି ନୁହେଁ। ପ୍ଲିସ୍, ସିଲେକ୍‌ସନ୍ ଇଜ୍ ପ୍ୟାରେଣ୍ଟସ୍ ଲାଏବିଲିଟି।''

ଅନ୍ଧକୁ ଗୋହିରୀ ବାଟ। ତପତୀ ଭାବୁଥିଲେ, ପିଲାଟା ବହୁତ ରିଜେକ୍‌ସନ୍ ଭୋଗୁଛି ବୋଧେ। ତେଣୁ ସେ ସିଲେକ୍‌ସନ୍‌ର ଦାୟିତ୍ୱ ନେଇ ପାରୁନି।

ଯାହାହେଉ, ଦୁଇ ବର୍ଷ ସମୟ। କମ୍ ନୁହେଁ। ବୟ- ଓରଫ୍- ପାତ୍ରଟିଏ ଖୋଜା ଯାଇପାରେ।

ସମସ୍ତଙ୍କପରି ଏମାନେ ବି ଖୋଜୁଥିଲେ : ମ୍ୟାଚ୍। ନାନା ସମୀକରଣର ଏକ ବିରାଟ ଆବଶ୍ୟକତା। ଅର୍ଥାତ୍, ରିଲିଙ୍କ ବ୍ୟକ୍ତିତ୍ୱକୁ ଆଉଁଶି ଉଷ୍ମରୁ ଶୀତଳ ଏବଂ ଶୀତଳରୁ ଉଷ୍ମ କରି କରି ଯିଏ ତାଙ୍କ ମନର ପୋଷା ଠେକୁଆକୁ ପ୍ରାକୃତିକ ପରିବେଶ ଯୋଗାଇ ପାରୁଥିବ କୃତ୍ରିମ ପରିଧି ଭିତରେ। ଏକାନ୍ତ ବ୍ରହ୍ମାନନ୍ଦ ଜଣକ ଭାବୁଥିଲେ, ମୋ ପରି ହେଲେ ବି ଚଳିବ। ଏକାନ୍ତ ତପତୀ ଜଣକ ଭାବୁଥିଲେ, ସମାସ୍କନ୍ଦ ହେବା ଉଚିତ।

ଦୁଇଥର ମନ୍ତ୍ରୀହୋଇ ବିରୋଧୀ ଦଳରେ ବେଶ୍ ଧାଡ଼ି ଜମେଇଥିବା ମନୋହର ବାବୁଙ୍କ ପୁଅ ଏମାନଙ୍କ ବିଚାରକୁ ଆସିଗଲା। କୌଣସି ସର୍ବଭାରତୀୟ ସର୍ଭିସ୍‌ର ନୁହେଁ। ତଥାପି ବି ସବୁ ଆଡୁ ଉତ୍ତମ ପ୍ରସ୍ତାବ। ଅଚଳାଚଳ ସମ୍ପତ୍ତି। ପୁଅ କୌଣସି ଅଏଲ୍ କମ୍ପାନୀର ସିନିଅର୍ ଏକ୍‌ଜିକ୍ୟୁଟିଭ୍। ରାଜ୍ୟ ବାହାରେ ଥାଏ। ସେତେବେଳକୁ

ନାନା ଯୁବକଙ୍କୁ ପ୍ରତ୍ୟାଖ୍ୟାନ କରି ସାରିଥିବା ରିଲି ମନୋହର ବାବୁଙ୍କ ପୁଅ ଭବାନୀ ଶଙ୍କରଙ୍କୁ ପସନ୍ଦ କଲେ । ତାଙ୍କ ସପକ୍ଷରେ ରିଲିଙ୍କର ମତ ଥିଲା, ''ମାମୀ, ହାଣ୍ଡସମ୍ ଏବଂ ହେନ୍‌ପେକ୍‌ଡ୍ ଟେଣ୍ଡେନ୍‌ସି ଅଛି ବୋଲି ଅନୁମାନ କରିହେଉଛି ।''

ରିଲି ଓ ଭବାନୀ ମିଳାମିଶା ହେଉଥିଲେ । ପାରିବାରିକଭାବେ ପ୍ରସ୍ତାବ ବି ପଡ଼ିଲା । ରାଜନୀତି ଏବଂ ପ୍ରଶାସନର ଚୁମ୍ବକୀୟ ଆକର୍ଷଣ ସମ୍ଭବ ହେଉଥିବାରୁ ସୂଚାରୁ ରୂପେ ଆଗେଇଚାଲିଲା । ଉଭୟ ପିତାଙ୍କ ପଦମର୍ଯ୍ୟାଦା ଓ ଗୁରୁତ୍ୱ ଦୃଷ୍ଟିରୁ ପ୍ରସ୍ତାବ ସମ୍ପର୍କରେ ଯଥାସମ୍ଭବ ଗୋପନୀୟତା ରକ୍ଷା କରାଯାଉଥାଏ । କାରଣ, ବ୍ରହ୍ମାନନ୍ଦ ବାବୁ ଆଉ ପାଞ୍ଚ ଜଣଙ୍କ ଭିତରୁ ଜଣେ ହୋଇ ମୁଖ୍ୟ ଶାସନ ସଚିବଭାବେ ମନୋନୀତ ହେବାର ସମ୍ଭାବନା ଆଗକୁ ଥାଏ । ନିର୍ବାଚନ ବି ଥାଏ ଆଉ କେତେ ମାସ ଆଗକୁ । ଏହି ସମ୍ବାଦ ରାଷ୍ଟ୍ର ହେଲେ ଉଭୟ ପିତାଙ୍କର କ୍ଷତି, ଏତତ୍ ସଚେତନତା ଉଭୟଙ୍କର ଥାଏ ମଧ୍ୟ ।

ବିବାହର ଅଳ୍ପଦିନ ପୂର୍ବରୁ ଔପଚାରିକ ଆବଶ୍ୟକତା ଅନୁଯାୟୀ ବ୍ରହ୍ମାନନ୍ଦ-ଦମ୍ପତି ମନୋହର ବାବୁଙ୍କ ଗାଁ ଘରକୁ ଗଲେ । ଭବ୍ୟ ସମ୍ବର୍ଦ୍ଧନା । କୋଉ ସାଧାରଣ ବାହାଘର ଯେ ଯାନି ଯୌତୁକ ଆଲୋଚନା ହୋଇଥା'ନ୍ତା ? ସବୁ ଶିଷ୍ଟାଚାର ଇ ଶିଷ୍ଟାଚାର । ରିଲିର ଲକ୍ ଭଲ । ଭାବୀ ଶାଶୁ-ଶ୍ୱଶୁର ଆଶା କରାଯାଉଥିବାଠାରୁ ଅଧିକ ବ୍ରଡ୍ ମାଇଣ୍ଡେଡ୍ ।

ମୁଖ୍ୟ ଶାସନ ସଚିବଙ୍କ ସହିତ ଅଣଆନୁଷ୍ଠାନିକଭାବେ ଆସିଥିବା ଅନ୍ୟ ଅଫିସରମାନଙ୍କ ଗାଡ଼ି ଲମ୍ବି ଯାଇଥାଏ ବେଶ୍ ଦୂରକୁ । ଗ୍ରାମାଞ୍ଚଳ ପୁଲିସ୍ ଇସ୍ତିରି ପୋଷାକ ପିନ୍ଧି ପହରା ଦେଉଥା'ନ୍ତି । ମନୋହର ବାବୁ ଅନ୍ୟ ଅଫିସରମାନଙ୍କ ସହିତ ଡ୍ରଇଂ ରୁମ୍‌ରେ ଗପ ହେଉଥା'ନ୍ତି । ଲଞ୍ଚ୍ ବ୍ୟବସ୍ଥା ନିକଟସ୍ଥ ଡାକବଙ୍ଗଳାରେ । ଅତି ଅନୁନୟ ହୋଇ ତପତୀ ଦେବୀ ମନୋହର ବାବୁ ଓ ତାଙ୍କ ପତ୍ନୀଙ୍କ ଏହି ନିମନ୍ତ୍ରଣକୁ ଏଡ଼େଇ ଦେଇଥା'ନ୍ତି । ''ଛି ଛି ଝିଅ ଦେଉଛୁ, ଏବେ କ'ଣ ଆପଣଙ୍କ ଘରେ ଆମର ପତ୍ର ପଡ଼ିବା ବେଳ ଆସିଲାଣି ?'' ବ୍ରହ୍ମାନନ୍ଦ ବାବୁ ଏବଂ ତପତୀ ଦେବୀ ସମୁଦୁଣୀଙ୍କ ସହ ସାକ୍ଷାତ କରିବାକୁ ଭିତରକୁ ଗଲେ । ଅଚିହ୍ନା । ବ୍ରହ୍ମାନନ୍ଦ ସଙ୍କେତ ଦେଲେ । ଆଗେ ପଶିଲେ ତପତୀ ।

ମାଡ଼ିମାଡ଼ି ପଡୁଥାଏ । ତଥାପି ବ୍ରହ୍ମାନନ୍ଦ ବାବୁ କହିଲେ, ''ସମୁଦୁଣୀ, ଆପଣ କିଛି କହିଲେନି ଯେ ?''

''କ'ଣ କହିବି ? ଯାଙ୍କଠାରୁ ଶୁଣିଛି, ଆପଣଙ୍କ ଝିଅଟି ଭାରି ଭଲ ।'' ଅଧା ଓଢ଼ଣା ସହ ଭଦ୍ର ମହିଳାଙ୍କ ଔଜଲ୍ୟ ବାରି ହୋଇ ପଡୁଥିଲା । ସ୍ଥୂଳକାୟ, ସଂଭ୍ରାନ୍ତ ସମ୍ପନ୍ନ ରୂପ । ବୟସର ବିପ୍ରାତ ସହିତ କୌଣସି ପ୍ରକାର ଛାଲିଆତି ନକରିଥିବା ସୁଠାମ ଚେହେରା । ଗାଉଁଲି ହେଉ ପଛେ, ଭକ୍ତିମୟୀ । ''ଆମ ପୁଅ ବୋଲି କହୁନି । ଭବାନୀ ସ୍ନେହୀ ପିଲାଟିଏ । ଏବେ ବି ମୋ କାନିରେ ମୁହଁ ପୋଛେ । ବାପାଙ୍କ ସାମ୍ନାକୁ ଯାଏନି ।''

ଏପରି ଗୌରଚନ୍ଦ୍ରିକାରୁ ଯେଉଁ ଯେଉଁ ସନ୍ଦେହ ଆସିବା ଉଚିତ, ବ୍ରହ୍ମାନନ୍ଦ ଏବଂ ତପତୀ ଦେବୀ ସେଇଗୁଡ଼ିକୁ ଭାବି ଯାଉଥିଲେ । ଗାଉଁଲି ବୁଦ୍ଧି । କହିଯାଆନ୍ତୁ । ଯୌତୁକ ? କେତେ ନେବେ ? ସବୁ ତ ରିଲିର ।

ସୌଜନ୍ୟ ଓ ସଣ୍ଢଣା ସଜାଡ଼ ସଜଡ଼ି କରି ବ୍ରହ୍ମାନନ୍ଦ ବାବୁ କହିଲେ, ''ସମୁଦୁଣୀ, ଆପଣଙ୍କର ଯାହା ଇଚ୍ଛା କୁହନ୍ତୁ ।''

''ଠାକୁରଙ୍କ ଦୟାରୁ ଆମର କ'ଣ ନାହିଁ ଯେ, ହେଲେ ଗୋଟିଏ କଥା ନିଶ୍ଚୟ ଖୋଜିବୁ । ଆମେ ମଲାବେଳକୁ ତୁଳସୀ ପତ୍ର ଗଙ୍ଗାଜଳ ଟିକେ ଦେବାକୁ ପୁଅ-ବୋହୂ କତିରେ ଥିବେ ତ ? ଭବାନୀଟି ମୋର ଅତି ସୁଧାର । ତାକୁ ମୁଁ ଯାହା କହିବି, ସେ ନିଶ୍ଚୟ ମାନିବ । ଇଏ ଆପଣଙ୍କୁ ଖବର ଦେବେ ଯେ ।''

ବ୍ରହ୍ମାନନ୍ଦ ଏବେ ସିଧା ତାଙ୍କ ମୁହଁକୁ ଅନାଇଲେ । ବହୁତ ପଛେଇ ପଛେଇ ହେଜିଲେ । ମାଳତୀ ???

ତପତୀ ଦେବୀ କହୁଥିଲେ, ''ନିଶ୍ଚିନ୍ତ ଥାଆନ୍ତୁ ଆପଣ ।''

ବ୍ରହ୍ମାନନ୍ଦ ଚିଡ଼ିଗଲେ । କ'ଣ, ଗଙ୍ଗାଜଳ ଦେବା ପ୍ରସ୍ତାବପାଇଁ ତପତୀଙ୍କ ଆଶ୍ୱାସନା ? ଷ୍ଟୁପିଡ୍ । କିନ୍ତୁ ସେ ତାଙ୍କ ଶାନ୍ତ ମୁହଁକୁ ଅସଜଡ଼ା କଲେ ନାହିଁ ।

କାରଣ କ'ଣ କେହି ଜାଣି ପାରିଲେ ନାହିଁ । ମୁଖ୍ୟ ଶାସନ ସଚିବ ଡାକ ବଙ୍ଗଳା ଲଞ୍ଚ୍ କାର୍ଯ୍ୟକ୍ରମ ଅଚାନକ ବାତିଲ କରି ରାଜଧାନୀକୁ ଫେରି ଆସିଲେ ତପତୀ ଦେବୀଙ୍କ କ୍ଷୁଧା-ଯନ୍ତ୍ରଣା ସତ୍ତ୍ୱେ ।



# ହଜୁର ଇଣ୍ଡିଆ ଲିମିଟେଡ୍

ଆକାଶରେ ଅପସରି ଯାଉଥିବା ବଳାକା ଅନ୍ଧାରକୁ ଟାଣେନି । ଅନ୍ଧାର ଆପେ ଆସୁଥାଏ । ମାତ୍ର ମାନସ-ସୁନ୍ଦରୀମାନଙ୍କ ରୋମାଣ୍ଟିକ୍ ଶାନ୍ତ ମୁହଁ ଥରେ ଝାଉଁଳିବା ଆରମ୍ଭ ହେଲେ ସେଥିରୁ ଦର୍ଶନ ନଖୋଜି ମନସ୍ତତ୍ତ୍ୱ ଖୋଜିବା ଭଲ । କାରଣ, ଅନେକ ଝଡ଼ର ପୂର୍ବ ସୂଚନା ଥାଏ ସେଇଥିରେ । ସ୍ୱାମୀ-ସ୍ତ୍ରୀ ସମ୍ପର୍କରେ ପ୍ରଥମରୁ ଜଣେ ଯଦି ଆର ଜଣଙ୍କ ନିକଟରେ ନିଜକୁ ନିର୍ବୋଧ ନାୟକ/ନାୟିକାଟିଏ ପରି ସଜାଇ ନାଟକ ରଚି ନ ପାରେ, ପରସ୍ପର ଗ୍ରହଣୀୟତା ଦୁରୂହ ହୋଇପଡ଼େ । ଆଲିଙ୍ଗନା, ଆରାଧନା, ଆଳତି ଆଦି ଯାବତ୍ ଆସକ୍ତ ବାହ୍ୟ ଆୟୋଜନ ସତ୍ତ୍ୱେ ହୃଦ-ସିଂହାସନଟି ଶୂନ୍ୟ ରହିଯାଏ ।

ମଣିଷ ଅରଣ୍ୟରେ ରହୁଥିଲା ବେଳେ ବି ତା' ମନ ଏତିକି ଆରଣ୍ୟକ ନଥିଲା । କାରଣ ନିଃସର୍ତ୍ତ ସମର୍ପଣରେ ଏପରି ଆଲୋଡ଼ନ ନଥାଏ ।

''ତୁମ ପରି ଅଯୋଗ୍ୟ ଲୋକ ସହିତ ମୁଁ ସଂସାରଟା ତୁଲେଇବି କେମିତି ?''

ଦାନ୍ତ କାମୁଡ଼ି ସାହେବ କହିଲେ, ''ଇଣ୍ଡିଆ ହାଜ୍ ଗନ୍ ଟୁ ଡଗ୍ସ୍ । ମୁଁ ତାକୁ ବାରମ୍ବାର କହିଥିଲି, କାମ ସାରି ଶୀଘ୍ର ଫେରି ଆସିବୁ । ମ୍ୟାଡାମ୍ ଫେଟେ ଯିବେ । ଇଟ୍ ଇଜ୍ ପ୍ରେଟି ଟୁ ଆୱାରସ୍ ।''

ବାସୁକିର ଫଣା ହଲିଲେ ବସୁଧା ଥରି ଯାଉଥିବା ପରି ଅଳ୍ପ କେତେକ କପାଳିଆ ଲୋକ ଥାଆନ୍ତି ଯେଉଁମାନଙ୍କ ଗମ୍ଭୀର-ଝାଉଁଳା ମୁହଁଯୋଗୁ ଆର୍ଯ୍ୟଭୂମି ମହାନ ଆମର ଏଇ ଭାରତ କୋଉଠି ନା କୋଉଠି ଅସ୍ଥିର ହୋଇଉଠେ । ସ୍ୱାମୀଙ୍କ କୈଫିୟତ ବିଧାନସଭାରେ ମନ୍ତ୍ରୀଙ୍କ ସପ୍ଲିମେଣ୍ଟାରୀ ପ୍ରଶ୍ନର ଅପ୍ରସ୍ତୁତ ଉତ୍ତର ପରି ଅସଂଲଗ୍ନ ଲାଗୁଥିଲା ତନିମାଙ୍କୁ । ସେ ଅନ୍ୟ କାରଣରୁ ବିଚଳିତା ଥିଲେ, ତଥାପି ଆଶ୍ୱସନା ଦେଇ କହିଲେ, ''ସେ ବଦ୍‌ମାସ କୋଉଠି ମାଲ୍ ମାରି ପଡ଼ିଥିବ । ତୁମ କଥା ମାନିଲେ ତ, ତୁମର ଦୋଷ କ'ଣ !''

''ନା ସୁଇଟ୍, ସେ ମଦ ପିଏନି ।'' ସ୍ୱାମୀଙ୍କର ଏଇ କଥା ପଦକରେ ମେମ୍ ସାହେବଙ୍କ ଆଖିରେ ଯେଉଁ ମାଇକ୍ରୋଓଏଭ୍ ଅଗ୍ନି ସଂଚାରଣ ହେଲା, ତାହା ଆଉ

କେହି ଦେଖିପାରି ନ ଥା'ନ୍ତେ ବା ଜାଣିପାରି ନ ଥା'ନ୍ତେ । ସାହେବ ଶଙ୍କିଗଲେ । ଡୋର୍ ବେଲ୍ ଶୁଣି ବିରକ୍ତ ପୁରୁଷଟି ବିଛଣାର ପଡ଼ିଥିବା ପରକୀୟା ଉଲଗ୍ନାର ଶାଢ଼ିଟା ଅଣ୍ଟାରେ ଗୁଡ଼େଇ କବାଟ ଅଳ୍ପ ଖୋଲି ଫାଙ୍କା ବାଟେ ଯଦି ନିଜ ସ୍ତ୍ରୀଙ୍କୁ ସେଇଠି ଠିଆ ହୋଇଥିବାର ଦେଖିପକାଏ, ସେ ଯେମିତି ସ୍ୱର୍ଗ ଓ ନର୍କ ଉଭୟଠାରୁ ଝିଙ୍କି ହୋଇ ଆସି ପୃଥିବୀରେ କଚାଡ଼ି ହୋଇଯାଏ, ସାହେବଙ୍କ ଅବସ୍ଥା ପ୍ରାୟ ସେଇଆ ହୋଇଗଲା ।

ପୁରୁଷଙ୍କପାଇଁ ସୁନ୍ଦରୀମାନଙ୍କ କ୍ରୋଧ ପ୍ରାୟ ମନଭେଦୀ । ସୁନ୍ଦରୀଙ୍କ ଈପ୍‌ସାର ବଳୟରେ ଯେଉଁ ପକ୍ଷୀଟି ଇତସ୍ତତଃ ଉଡ଼ି ଉଚ୍ଚାଟଭାବେ ନିଜ ଡେଣାର ପରାକ୍ରମ ପ୍ରଦର୍ଶନ କରୁଥାଏ, ସେ ନିଜେ ବି ଜାଣି ନ ଥାଏ କାହିଁକି ଉଡ଼େ ବୋଲି । ସାହେବ କହିଲେ, ''ତା' ସ୍ତ୍ରୀର ମେଡିକାଲ୍ ଚେକ୍‌ଅପ୍‌ପାଇଁ ମୋତେ ସେ କହିଲା । ମୁଁ ତାକୁ ବାରମ୍ବାର କହିଛି, ମା'ଙ୍କର ଫେଟେ ଅଛି ।''

ଭଦ୍ର ମହିଳା ଆଉ କିଛି କହୁ ନ ଥାନ୍ତି । ତାଙ୍କ ଶାଢ଼ିର କାନି ହଲିଲାବେଳକୁ ବା ଚୁଡ଼ି ଝମ୍ କଲାବେଳକୁ ବିଚରା ଅନୁପସ୍ଥିତ ଡ୍ରାଇଭରଟି ଇଂରାଜୀ, ଫରାସୀ, ଲାଟିନ୍, ଆଦି ଭାଷାର ଶୋଧା ଶୁଣୁଥାଏ । ଆଉ ପ୍ରାୟ ପନ୍ଦର ମିନିଟ୍ ପରେ ଗୋଡ଼ ଝିମ୍ ଝିମ୍ ହେବାଯୋଗୁ ପାଦ ଛନ୍ଦି ବସିଥିବା ମ୍ୟାଡାମଙ୍କ ଡାହାଣ ଚପଲ ଯେତେବେଳେ ବାଁ ପଟକୁ ଗଳିପଡ଼ିଲା, ହାକିମ ଆଉ ସମ୍ଭାଳିପାରିଲେ ନାହିଁ । ବାଞ୍ଛା, ବନା, ନିଧିଆମାନେ ହିଡ଼ମୂଳ ବା ଗାଁ ଗୋହିରିରେ ଯେଉଁ ପ୍ରାକ୍-ସାରଳା ଯୁଗର ଓଡ଼ିଆ ଗାଳିମାନ ଏଯାବତ୍ ସଂସ୍କୃତି ଜରିଆରେ ସଂରକ୍ଷଣ କରି ପ୍ରୟୋଗ କରି ଆସୁଛନ୍ତି, ସେଇଥିରୁ ସବୁ ଆରମ୍ଭ କରିଦେଲେ ଅନୁପସ୍ଥିତ ଡ୍ରାଇଭର ଉଦ୍ଦେଶ୍ୟରେ । ଇସ୍, ତନିମା ନ ରାଗିଥିଲେ ତାଙ୍କୁ କେତେ ରୋମାଞ୍ଚିତ ଲାଗୁ ନ ଥା'ନ୍ତା ଟି ସ୍ୱାମୀଙ୍କର ଏପରି ଆଦିମତା !

ତନିମା କହିଲେ, ''କାହିଁ ନିଜ ମୁଣ୍ଡ ଖରାପ କରୁଚ ମ । କଲେକ୍ଟର ହୋଇ ଯଦି ଏମିତି ହେବ, ଜିଲ୍ଲାର ଅବସ୍ଥା କ'ଣ ହେବ ? ଡିଅର୍, ପ୍ଲିଜ୍ ଟେକ୍ ମି, ଆଇ ଫିଲ୍ ଠୁ, ହି ଇଜ୍ ଏ ନାଇସ୍ ମ୍ୟାନ୍ ।''

ଡ୍ରାଇଭରର ଗୋଟିଏ ବିଷୟରେ ଦୁଇ ଜଣଙ୍କ କଥା ମିଶୁଛି, ହେଲେ ଚଲା ବଉଦ ପରି ମନ ଦିଓଟି ପବନ ଠାରୁ ସ୍ୱାଧୀନ ରହି ପାରି ନାହାନ୍ତି । ରଥ ନ ଥାଉ ପଛେ ବଡ଼ ଦାଣ୍ଡର ପବିତ୍ର ଧୂଳି, ରାଧା ନଥାନ୍ତୁ ପଛେ ଶ୍ୟାମଙ୍କପାଇଁ ଜ୍ଞାତ କୁଞ୍ଜର

ସ୍ତୁତି-ସୀକ୍ାର, ରତି ନ ଥାଉ ପଛେ ପ୍ରୀତିପର୍ଣ୍ଣାର ଅଳି ବା ଆଦେଶପାଇଁ ଅଭିଶପ୍ତ ଗନ୍ଧର୍ବର ପ୍ରତୀକ୍ଷା — ସବୁ ଏକତରଫା ଭାବୋଦ୍ଦୀପକ। ସାହେବ ବୋଧହୁଏ ଅବଚେତନ ନିର୍ଯାତନାରୁ ନିସ୍ତାର ପାଉ ନ ଥାନ୍ତି । ସେ କ'ଣ ଅଯୋଗ୍ୟ ? ଏଡ଼େ ବଡ଼ ହାକିମ, ଜ୍ଞାନ କାହିଁରେ କେତେ, ଅଥଚ ଛୋଟିଆ କଥାଟିଏ ମନକୁ ବୁଝେଇ ପାରୁ ନ ଥାନ୍ତି, ଫୁଲେଇମାନଙ୍କ ଛଡ଼ା କୋଉ ସ୍ତ୍ରୀ ନିଜ ସ୍ୱାମୀକୁ ଯୋଗ୍ୟ ବୋଲି ଘୋଷଣା କରେ ଯେ !

ସେ ବ୍ୟବସ୍ଥା କରିଦେଲେ, ମ୍ୟାଡାମ ଅନ୍ୟ ଗାଡ଼ିରେ ଯାଆନ୍ତୁ । ବରଂ ସେ ନିଜେ ଯୋଜନା ସମୀକ୍ଷା ବୈଠକରେ ବିଳମ୍ବରେ ପହଞ୍ଚିଲେ ଚଳିବ । ସେଠାରେ ଅପେକ୍ଷାରତ ସବୁ ଅଫିସର ତାଙ୍କ ଅଧସ୍ତନ । ପ୍ୟାଣ୍ଟ ତଳେ ପିମ୍ପୁଡ଼ି କାମୁଡ଼ିବା ପରି ଦୁଇ ତିନି ଜଣଙ୍କ ଉପସ୍ଥିତି, ଯାହା ଅଖଞ୍ଜ ହୁଏ । ଯେଉଁମାନେ କେବେ ନିର୍ବାଚନ ଲଢ଼ନ୍ତି ନାହିଁ, ଅଥଚ ପ୍ରତିନିଧି ପଦବାଚ୍ୟ ହୋଇ କେବଳ ବିଭ୍ରାଟ ସୃଷ୍ଟି କରନ୍ତି । ଦି କଣ୍ଟ୍ରି ହାଜ୍ ଗନ୍ ଟୁ ଡଗ୍ସ୍ । ଉଙ୍ଗକୁଳୀନ ଗଣତନ୍ତ୍ରରେ ଯଦି ନିଲଠା ନମସ୍କାରର ବାଧ ବାଧକତା ନ ଥାନ୍ତା ଏ ଗୁଡ଼ାଙ୍କୁ ମୁହେଁ ମୁହେଁ ଟାଉଟର କହିଦେଲେ ବି ଚଳନ୍ତା । ସେ ନିଜ ସମ୍ଭାବିତ ଅନୁପସ୍ଥିତି ବିଷୟରେ ଗଭୀର ଭାବେ ଚିନ୍ତା କଲେ। ଯେମିତି ହିମାଳୟଠାରୁ କୁମାରିକାଯାଏଁ କୁଜି ସରକାର, କୁନି ସରକାର, ବଡ଼ ଛୋଟ ସବୁ ଦଢ଼ ସରକାରମାନେ ଚିନ୍ତା କରୁଥାନ୍ତି । ସେ ଆଶ୍ୱସ୍ତ ହେଲେ, ସବୁ ନଈର ବୋହି ଯାଉଥିବା ପାଣି ତ ମଇଳା, ତଥାପି ସାଗରର ପାଣି ନେଳିଆ କେମିତି ? ଏଇ ତ ଗଣତନ୍ତ୍ରର ଚମତ୍କାର। ସୂର୍ଯ୍ୟ ମେଘ ଆଢୁଆଳରେ ରହିଲେ ବି ତାହା ରାତି ନୁହେଁ। ଖୁବ୍ ବେଶୀରେ ଜଣେ ଅଧେ ସ୍ମାର୍ଟ ଅଫିସର କାହିଁକି ବିଳମ୍ବ ହେଉଛି ବୋଲି ଜାଣିବାକୁ ଫୋନ୍‌ଟେ କରିପାରନ୍ତି ।

ତନିମା ଯିବାବେଳେ ସ୍ୱାମୀଙ୍କ କାନଠାରୁ ପ୍ରାୟ ଗାଲ ପର୍ଯ୍ୟନ୍ତ ଦୁଇ ହାତରେ ଖାଲି କଳସ ଧରି ହଲାଇଲା ପରି କହିଦେଇଗଲେ, "ହେ, ତୁମେ ମୋତିରାମ ଉପରେ ମୋଟେ ରାଗିବନି ।"

ଗରମ ପାଣିରେ ସିନା ଘର ପୋଡ଼େନି, ହେଲେ ଚମଡ଼ା ତ ଉତୁରିଯାଏ । ମେମ୍ ସାହେବ ଏତିକି ସାନ୍ତ୍ୱନା ନ ଦେଇଥିଲେ ବୋଧହୁଏ ଭଲ ହୋଇଥାନ୍ତା । ପତ୍ନୀ ବାହାରିଯିବା ପରେ ସାହେବ ନାନାଦି କଥା ଭାବିଲେ । ଜଣେ କଲେକ୍ଟରର ସ୍ତ୍ରୀ ଠାରୁ ପ୍ରୋଜେକ୍ଟ ଡାଇରେକ୍ଟରର ସ୍ତ୍ରୀକୁ ଲୋକେ ସୁନ୍ଦରୀ ବୋଲି ଭାବିବା ଉଚିତ ନୁହେଁ।

ଛାତି ଭିତରୁ ତାଙ୍କର ଗୋଟିଏ କ୍ଷୀଣ ସ୍ପନ୍ଦନ ବାହାରିଆସିଲା । ମମତା ମଜୁମ୍‌ଦାର । ରିଏଲି.... ! ସେ ଚମକି ପଡ଼ିଲେ । ତନିମାଙ୍କ ଅପେକ୍ଷା ମମତା ଯଦି ସେଠାରେ ଆଗେ ପହଞ୍ଚିଯାଇଥାଏ ? ଓଃ, ୟୁ ବ୍ଲଡ଼ି ମୋତିରାମ ।

ପୂର୍ବାନୁମାନ ଯେତେ ଯାହାର ଠିକ୍, ସେ ବ୍ୟକ୍ତିତ୍ୱ ସେତିକି ସଫଳ । ସମୀକ୍ଷା ବୈଠକ ଆୟୋଜନ କରାଯାଇଥିବା ସବ୍‌ଡିଭିଜନ୍ ହେଡ୍‌କ୍ୱାଟର୍‌ସ୍‌ରୁ ଫୋନ୍ ଆସିଲା । ଅଡ଼ର୍ଲି ପଚାରି, ବୁଝି, ଦୁଇ ଥରରେ ଜଣାଇଲା, ‘‘ସାହେବଙ୍କ ଦେହ ଭଲ ନାହିଁ । ଶୋଇଛନ୍ତି ।’’..... ‘‘ନା ସାର୍, ସାହେବ କହିଲେ, କେହି ଆସିବା ଦରକାର ନାହିଁ । କାଲି ଆଡ଼କୁ ତାଙ୍କ ଦେହ ଭଲ ହୋଇଯିବ ।’’

କଲେକ୍ଟର ମଳୟରଞ୍ଜନଙ୍କ ମନ ବିଷାକ୍ତ ହୋଇଯାଉଥାଏ । ତନିମା ଫେରି ନାହାନ୍ତି । ଆସିବେ, ସେଥିଯୋଗୁ ସେ ବ୍ୟସ୍ତ ହେଉ ନାହାନ୍ତି । କିନ୍ତୁ ଯେ ହୋପ୍‌ଲେସ୍ ବ୍ୟୁରୋକ୍ରାସୀ ? ତେଲ ମାରିବାର ପ୍ରକରଣ ଗବେଷଣାରେ ବ୍ୟସ୍ତ ରହିବା ଛଡ଼ା ଏଗୁଡ଼ାକ ଆଉ କିଛି ପରମାର୍ଥ ସାଧନା ଶିଖିପାରୁ ନାହାନ୍ତି । ବ୍ଲଡ଼ି, ଜନ୍ ବୁଲ୍ ସିଷ୍ଟମ୍ । କ’ଣଟା ମୋର ହେଇଚି ଯେ ପ୍ରତିଯୋଗିତା କରି ଗୁଡ଼େ ଅଫିସର୍ ଏମିତି ବିଳମ୍ବିତ ସନ୍ଧ୍ୟାରେ ସରକାରୀ ଗାଡ଼ି ଦଉଡ଼େଇବେ ମୋତେ ଦେଖିବାକୁ ? ଏ ଦେଶଟା କାହିଁକି ସ୍ୱାଧୀନ ହେଲା ? ଦାୟିତ୍ୱସଂପନ୍ନ ଲୋକଗୁଡ଼ାକ କେମିତି ଏତିକି ସର୍ବନିମ୍ନ କଥା ବୁଝିପାରୁ ନାହାନ୍ତି ? ଏମିତି ନାନାଦି ଦେଶାତ୍ମାବୋଧକ ଚିନ୍ତା ତାଙ୍କ ମନକୁ ବିବ୍ରତ କଲା । ତନିମା ଫେରିଲାବେଳକୁ ସେ କେମିତି ଦେଖାଯାଉଥିବେ, କେଜାଣି ?

ଯୋଗ୍ୟ ମଣିଷମାନଙ୍କ ମନ ଯଦି ଏମିତି ବିଚିତ୍ର ଅଇନାଟିମାନ ହୋଇଥାନ୍ତା, ଯେ ଗୋଟିଏ ପ୍ରତିଛବି ପରେ ଯାହାର କାଚ ଝଣ ଝଣ ହୋଇ ଭାଙ୍ଗି ଯାଉଥାନ୍ତା, ସେଇ ଭଙ୍ଗା କାଚର ଅଳିଆ ଗଦା ତଳୁ ସେଇ ମଣିଷଟି ହୁଏତ ଆଉ ମୁଣ୍ଡ ଟେକି ଉଠିପାରନ୍ତା ନାହିଁ, ବା ଯଦି ବି ଉଠନ୍ତା, ସେ ନିଜକୁ ନିଜେ ଚିହ୍ନି ପାରନ୍ତା ନାହିଁ । ଯେମିତି ପ୍ରଜାପତି । ଶଅଁବାଳୁଆଠାରେ କିଛି ସାଯୁଜ୍ୟ ଦେଖେନା ବା ତା’ ନିକଟରେ ଦିନେ ବସି ଭାବ ଦେଣନେଣ ବି ହୁଏନା ।

‘‘ଚିତ୍ର ପ୍ରତିମା ପ୍ରାୟ ଦିଶୁ ସୁନ୍ଦର/ଚିରି ଭିତରେ ଦେଖ କି ନାରଖାର ।’’ ସେ ଗୁଣୁ ଗୁଣୁ ହୋଇ ଏତିକି ଗାଇସାରି ଭାବିଲେ, ରବିସ୍ । ଇଏ ପୁଣି ଗୋଟାଏ ଦର୍ଶନ । ନ’ସେଏଟିଂ ।

ନିରୋଳା ସମୟ ପାଇ ସେ ତନିମାଙ୍କୁ ଅନୁଶୀଳନ କରିବାକୁ ଲାଗିଲେ । ଅଜାଣତରେ ମମତାର ଦେହ, ରୂପ ତାଙ୍କ ମନ ଭିତରକୁ ପଶି ଆସୁଥାଏ । ତାକୁ ସେ ଠେଲି ଦେଉଥା'ନ୍ତି । ପୁଣି ପଶି ଆସୁଥାଏ ଏବଂ ଭଲ ବି ଲାଗୁଥାଏ ।

ତାଙ୍କୁ ଲାଗୁଥିଲା, ତନିମା ଭାରି ଭଲ । ତଥାପି .... !

ଉଦୟ-ଯୌବନର କାଳ ଉତ୍ତାଳ । ସେଇଠି କିନ୍ତୁ ତରୁଣୀଟି ସଂସ୍କାର ମାନେ । ଗୋପନ ମନର ମୂଲ୍ୟବୋଧକୁ ବେଖାତିର କରୁଥିବା ଭାବ ଉହୁଙ୍କି ଆସୁଥିଲେ ମଧ, ସେ ଭୟ କରୁଥାଏ । ମିତଣୀମାନଙ୍କ ସହିତ ଆଲୋଚନା ବେଳେ ପ୍ରଚଳିତ ବିଶ୍ୱାସକୁ ଯେତେ ଶାଣିତ ଯୁକ୍ତି ଓ କଟୁ ଭାଷାରେ ନିନ୍ଦା କରିଥାଉ ପଛେ, ସେ ଭକ୍ତି ହିଁ କରେ । ମନ ଭିତରେ ନାନାଦି ସମର ସଜ୍ଜା କରୁଥାଏ । ହେଲେ ନିଜର ରଥ, ଗଜ, ଅଶ୍ୱ, କାହାରିକୁ ସେ ପଦାକୁ କାଢ଼େନି । ଯଦି ଅକସ୍ମାତ୍ ଗୋଟାଏ କେହି ଆଗୁଳା ଡେଇଁ ଖସି ଯିବାବେଳେ ସମାଜର ଦାୟିତ୍ୱହୀନ ନଜରରେ ଠାବ ହୋଇଯାଏ, ସେ ତତ୍କ୍ଷଣାତ୍ ଅପ୍ରତିହତ ସୁଯୋଗଟିଏ ସୃଷ୍ଟି କରି ନିଜ ମାଲିକାନାକୁ ବରଂ ଅସ୍ୱୀକାର କରିପକାଏ । ତା' ଚିନ୍ତାର ସବୁ ପାପ-ପାଣିକୁ ନଈର ଚୋରା ବାଲି ତଳେତଳେ ଧାରଟିଏ ସୃଷ୍ଟି କରି ସମୟର ସମୁଦ୍ରକୁ ଛାଡ଼ିଦିଏ ସିନା, ହେଲେ ଅବବାହିକାରେ ପୁଣ୍ୟର ପତାକା ଉଡ଼ାଉଥାଏ ସେ ।

କିନ୍ତୁ ବହୁ ପରେ, ସେ ଯେତେବେଳେ 'କ୍ଲାଇମେଟ୍ରିକ୍ ଅବସ୍ଥା' (ଗାଣିତିକ ହିସାବରେ ନବଯୌବନ ବୟସ ଗୁଣନ ପ୍ରାୟ ତିନି ଦଶମିକ ପାଞ୍ଚ) ରେ ପହଞ୍ଚେ, ସେତେବେଳକୁ ସେ ନିଜ କଳ୍ପନାର ସାଇତା ଧନ ମୁକାମରେ ପହଞ୍ଚାଇଦେଇଥାଏ । ହତାଶ ହେବାପରି ଖାସ୍ ହଜଇବାକୁ କିଛି ନଥାଏ । ମାତ୍ର କେଜାଣି କାହିଁକି, ସେତିକି ବେଳେ ହିଁ ଅନେକ ଭାବିବାକୁ ଆରମ୍ଭ କରନ୍ତି, ନିଜର ପରିପୂର୍ଣ୍ଣ ଦେହଟି ଯେମିତି ଗୋଟାଏ ଶୂନ୍ୟ ଦେହଳୀ । ମନ ଖାଲି ଦେଖେ ମରୀଚିକା । ଅଯୁତ ଇଚ୍ଛାଗୁଡ଼ିକ ଅସଂଲଗ୍ନ ହୋଇପଡ଼ନ୍ତି । ତେଣୁ, ନିରଳସ-ଅଚେତନ ବା ଅଳସ-ସଚେତନ ପରି ଦୁଇଟି ମାରାତ୍ମକ ଅବସ୍ଥାରେ ସରହଦ-ଖୁଣ୍ଟ ପୋତିବାକୁ ବି ଅନେକ ଉଚିତ ମଣନ୍ତି ନାହିଁ । ନିଜେ ନିଜର ଜଗୁଆଳି ହୋଇ ପଡ଼ନ୍ତି । କାହାକୁ ଜଗନ୍ତି, ରୂପକୁ ନା ବୟସକୁ ? ବିଚିତ୍ର କଥା । ଯେଉଁଥିପାଇଁ ଆତଙ୍କ, ସେଇଥିପାଇଁ ମୋହ ! ଏମିତିକା ମାରାତ୍ମକ ଦ୍ୱନ୍ଦ୍ୱ ଯୋଗୁ ଅନେକ ଚୋରଙ୍କୁ ଡାକି ହାକି ନିଜ ଘରେ ବି ଲୁଟେଇ ଦିଅନ୍ତି । ଅବଶ୍ୟ ଭାବୁଥାନ୍ତି, ନଈ ପାଣି ପବିତ୍ର । ଅବବାହିକାରେ ଆଉ କିମ୍ପାଇ ପତାକାର ପତିଆରା ? ଇସ୍, ଇଏ ବି ଏକ ମନସ୍ତାତ୍ତ୍ୱିକ ବିଡ଼ମ୍ବନା ।

ମଳୟଙ୍କ ଚିନ୍ତା ସବୁ ଏଇଠି ଅଟକିଗଲା । କିଏ ଆସିଲା ? ପ୍ରାୟ ତନିମା ।

"ତୁମେ କ'ଣ ଗଲନି କି ?" ତନିମା ପାଖରେ ବସିପଡ଼ିଲେ । ମଳୟଙ୍କର ସବୁ ଭାବନା ସେଇଠି ବନ୍ଦ ହୋଇଗଲା । ସେ ବେଶ୍ ଉତ୍‌ଫୁଲ୍ଲିତା ଦେଖାଯାଉଥିଲେ । ମମତା ପାଇଁ ଯେମିତି କିଛି ଆତଙ୍କ ନଥିଲା ତାଙ୍କ ମନରେ ।

ତନିମା ଅନେଇ ଥା'ନ୍ତି ଉଦ୍‌ଗ୍ରୀବ ପ୍ରସବିନୀ ଖଣ୍ଡେ ମେଘ ପରି ଏବଂ ଭାବୁଥାନ୍ତି, ମଳୟଙ୍କ ମନରେ ଯେମିତି ଯୁଗ ଯୁଗର ମରୁତୃଷ୍ଣା । ତନିମାଙ୍କ ଠାରେ ମଳୟ ଦେଖୁଥାନ୍ତି ଏକା ସାଙ୍ଗରେ ତିନୋଟି ରୂପ । ଶାଗୁଣା ଘେରା ଶବ, କଅଁଳିଆ ଅକ୍ଟୋପସ୍ ଓ ମମତା ମଜୁମ୍‌ଦାର ।

ମଳୟ ହସୁଥିଲେ । ସେତେବେଳକୁ ଲୋଟି ପଡ଼ିଥିବା ତନିମାଙ୍କ ଅଙ୍ଗଲତାର ଅନେକ ରୋମାଞ୍ଚିତ ଅଂଶ ତାଙ୍କ ଉପରେ, ବାହୁ ବେଷ୍ଟିତ ।

ନିଜେ ସାମ୍ନାରେ ଉଭା ହେବା ପର୍ଯ୍ୟନ୍ତ ମୋତିରାମ ଆଉ କାହାରି ମନେ ପଡ଼ି ନ ଥିଲା । ସେ କାନ୍ଦୁଥିଲା । ବାହାନା ଦେଖେଇ ସାଧାରଣ ଲୋକଗୁଡ଼ା ଏଡ଼େ ସୁନ୍ଦର ନାଟକ କରିପାରନ୍ତି ? ଜୀବନର ଅନେକ ସତ୍ୟ, ଅଭିନୟ ଠାରୁ ଆଉରି ନିଖୁଣ — ଏହା ବୁଝିବାକୁ ହେଲେ ସେପରି ଜୀବନ ସହିତ ମଧ୍ୟ ପରିଚୟ ଥିବା ଦରକାର ।

ମୋତିରାମ କାନ୍ଦୁଥିଲା ।

ମେମ୍ ସାହେବ ପଚାରିଲେ, "କିରେ ମୋତି, କ'ଣ ହେଲା ?"

ମୋତିରାମ ତଥାପି କାନ୍ଦୁଥିଲା ।

କଲେକ୍ଟର କହିଲେ, "ତୁ କାଲି ସକାଳେ ଷ୍ଟେନୋ ବାବୁଙ୍କୁ ଦେଖା କରିବୁ ।"

ମୋତିରାମର ଅଶୁଭ ସମୟ ସୂର୍ଯ୍ୟୋଦୟରେ ବଦଳିବାର ନ ଥିଲା । ପାଇଲା ଇଂରାଜୀ ଚିଠି ଖଣ୍ଡିଏ । ସେ ସସ୍‌ପେଣ୍ଡ୍ ହୋଇଥିଲା । ତା' ବିରୁଦ୍ଧରେ ଅଭିଯୋଗ, କର୍ତ୍ତବ୍ୟରେ ହେଳା କରିଥିବା ଏବଂ ସରକାରୀ ସମ୍ପତ୍ତି ଦୁରୁପଯୋଗକାରୀ ସେ ଜଣେ ବିଶୃଙ୍ଖଳ ସରକାରୀ କର୍ମଚାରୀ । ଶୃଙ୍ଖଳାଗତ କାର୍ଯ୍ୟବିଧି ସମ୍ବନ୍ଧରେ ସେ ପରେ ସୂଚନା ପାଇବ ।

ତର୍‌କି ଦଉଡୁଥିବା କୁକୁର ଯେମିତି ଖଣ୍ଡେ ଦୂର ଯାଇ ମିଛଟାରେ ଡରାଇବା ଲାଗି ଭୋ ଭୋ କରିଦିଏ, ମୋତିରାମ ମହାପାତ୍ର ସେମିତି ଷ୍ଟେନୋ ବାବୁଙ୍କୁ ହାଙ୍କି କହିଲା, "ଏ ଦସ୍ତଖତ ତ କଲେକ୍ଟରଙ୍କର ନୁହେଁ ।"

''କଲେକ୍ଟର ସାଇନ୍ କରିବେ ? ତୋ' ମୁଣ୍ଡ ଖରାପ ହେଇଚି ନା କ'ଣ ? ତାଙ୍କୁ ତୁ କ'ଣ ପାଇଲୁ କି, ସେ ପରା ଗୋଟେ ଅନୁଷ୍ଠାନ । ସାଇନ୍ କରିଛନ୍ତି ସେକେଣ୍ଡ୍ ଅଫିସର୍ ।''

ଚିନ୍ତାମଣି ମିଶ୍ର ! ମୋତିରାମର ଅନୁମାନ ସବୁ ଗୋଳମାଳ ହୋଇଗଲା । ସେ ସାହେବଙ୍କ ପାଖରେ ଏମିତି କୁର୍ଣ୍ଣିସ ହୁଅନ୍ତି ଯେ ତାହା ଦେଖି ଅନେକଙ୍କୁ ଲାଜ ମାଡ଼େ । ଥରେ କଲେକ୍ଟରଙ୍କ ସାମ୍ନାରେ ମା' କହିଲେ, ''ଚିନ୍ତାମଣି ବାବୁ ପୂର୍ବ ଜନ୍ମରେ ନିଶ୍ଚୟ ପୋଷା ଶୁଆ ଥିଲେ ।'' ପ୍ରୋଗ୍ରାମ ବାହାରେ ଟୁର୍ କଥା ଜାଣିବାକୁ ସେ ତ ମୋତିରାମକୁ କେତେଥର ପାନ ଦେଇଛନ୍ତି । ସିଭିଲ୍ ସପ୍ଲାଇ ଚାର୍ଜରେ ଥିଲାବେଳେ ସେ ସାହେବଙ୍କର ଏଇ ଅଜଣା ଗସ୍ତ କଥା ଜାଣିବାକୁ ତାକୁ ତେଲ ମାରୁଥିଲେ । ସେ ପୁଣି ତାକୁ ସସ୍‌ପେଣ୍ଡ କରିପାରିବେ ? ସମ୍ରାଟଙ୍କ ପୋଷାକର ଜରିରେ ବିଚରଣ କରୁଥିବା କୀଟଗୁଡ଼ା ଯେମିତି ସମ୍ରାଟଙ୍କର ନିହାତି ପାଖର ବୋଲି ଭାବି ବସନ୍ତି, ମୋତିରାମ ତହୁଁ ଅଧିକ କିଛି ନିଜ ସପକ୍ଷରେ ଭାବି ନଥିଲା ।

ମେରି ଖୁଣ୍ଟରେ ଯୋଚା ହୋଇଥିବା ପ୍ରଥମ ବଳଦ ଫରଚାରେ ବୁଲି ପାରେ ନାହିଁ । ଅଧସ୍ତନ କର୍ମଚାରୀଙ୍କ ଉଗୁରି ବା ଉଚ୍ଚଟାପଣ କେମିତି ଅବଦମିତ କରାଯାଏ, ଏଇ କଥାଟିକୁ ଭାରତୀୟମାନେ ମହାରାଣୀଙ୍କ ଶାସନଠାରୁ ଶିଖି ଶିଖି ପୂରା ଦୋରସ୍ତ ହୋଇ ସାରିଛନ୍ତି । ପବ୍ଲିକ ସରଭେଣ୍ଟ ମୋତିରାମ ମହାପାତ୍ରଙ୍କୁ ଷ୍ଟେନୋ ବାବୁ ବୁଝାଇଦେଲେ । ''ସସ୍‌ପେଣ୍ଡ କିଛି ନୁହେଁରେ । ଯଦି ଡିସ୍‌ମିସ୍ ହେଉ ସବୁ ସରିଯିବ । ଡିସ୍‌ଚାର୍ଜରେ ରକ୍ଷା ଅଛି । କେଜାଣି ହାକିମ ଯଦି ଦୟା କରିବେ ରିଇନଷ୍ଟେଡ୍ କରିଦେଇପାରନ୍ତି ।'' ସବୁ ବୁଝିବା ପରେ, ନିଜ ଲାଳକୁ ଅମୃତ ମନେକରି ଚୁଷିବା ପ୍ରକ୍ରିୟାରେ ମୋତିରାମ ଆମୋଦିତ ହେବାକୁ ଆରମ୍ଭ କଲା । ଯେମିତି ଯାଦୁଆମାନେ ନିଜ ଦେହକୁ ରାମ୍ପିବା କାର୍ଯ୍ୟରେ ମନୋନିବେଶପୂର୍ବକ ତୃପ୍ତ ହୋଇପଡ଼ନ୍ତି ।

ଇସ୍, ଆର୍ଯ୍ୟମନର କି ଅପୂର୍ବ ମାୟା । ପଥିକୃତ ମରଣର ଉପସଂହାର ପାଇଁ ଜୀବନଟା ସାରା ବୈଭବର ଲୋଭ ! ଜୀବନ ପୁଣି ଏମିତି, ଯେଉଁଥିରେ ଜିଇବା ନାଁରେ ମରଣର ଯାତନା । ଷ୍ଟେନୋ ବାବୁ କହିଲେ, ''ମୋତେ ତ ଭାରୀ ଦୟା ଲାଗୁଛି । ହେଲେ ମୁଁ କରିପାରିବି କ'ଣ ? ତୁ ମେମ୍‌ସାହେବଙ୍କ ପାଦ ଧରି ପଡ଼ିଯା' । ଆଖିରୁ ଲୁହ ଗଡ଼େଇ ଭୋ ଭୋ ହୋଇ କାନ୍ଦିବୁ । ସେଇ ଏକା ରକ୍ଷା କରିପାରିବେ ।''

ଷ୍ଟେନୋ ବାବୁଙ୍କ ପରାମର୍ଶ ସତ୍ତ୍ୱେ ମୋତିରାମ ନାନାଦି କଥା ଭାବିଲା । ଚିନ୍ତା-ଲୋତକ-ରୋଦନର ଏମିତିକା ନାଟ୍ୟମଞ୍ଚ ଗତିଶୀଳତା ବାସ୍ତବ ଜୀବନରେ କେମିତି ସମ୍ଭବ, ସେ ବୁଝି ପାରୁ ନ ଥାଏ ।

ନକଲି ଦାନ୍ତର ଚମକ ଯାହା ହୋଇଥାଉ ପଛେ, ଥରେ ତୁଣ୍ଡରୁ ଗଳିପଡ଼ିଲେ ତାକୁ ସଫାସୁତୁରା ନକରି ଆଉ ଥରେ ମଣିଷ ତାହା ଯେ ପାଟିରେ ପୂରାଇ ନ ପାରେ, ପ୍ରାୟ ସେହିପରି କାରଣରୁ ସସ୍‌ପେଣ୍ଡେଡ୍ ଡ୍ରାଇଭର ମୋତିରାମ ଆଉ କଲେକ୍ଟରଙ୍କ ରେସିଡେନ୍‌ସକୁ ଅବାଧରେ ପ୍ରବେଶ କରିପାରୁ ନ ଥାଏ ।

ଥରେ ସମ୍ଭବ ହେଲା । ମା’ ସାକ୍ଷାତ ଦୟାର ମୂର୍ତ୍ତି । ମାସଟିଏ ବି ପୂରି ନ ଥାଏ, କଲେକ୍ଟରଙ୍କୁ ସେ ଘରେ ଭେଟି ପାରିଲା । କଲେକ୍ଟରଙ୍କ ଜୋତା ଧରି ପଡ଼ିବା ଠାରୁ ପୁଣି ସଳଖ ହେବା ଭିତରେ ମୋତିରାମ ବାଲ୍ୟକାଳରୁ ସେ ପର୍ଯ୍ୟନ୍ତ ଯେତେ ଠାକୁର-ଠାକୁରାଣୀଙ୍କୁ ଚିହ୍ନିଥିଲା, ସଭିଙ୍କୁ ହେଜି ଗଲା ।

କଲେକ୍ଟର କହିଲେ, ‘‘କିରେ, ମେଡିକାଲ ଚେକ୍‌ଅପ୍ ନାଁରେ ସରକାରୀ ଗାଡ଼ି ନେଇ ସ୍ତ୍ରୀକୁ ସହର ବୁଲେଇ କୌତୁକ କରୁଥିଲୁ ନା ?’’

‘‘ହଜୁର୍, ଗାଡ଼ି ଗ୍ୟାରେଜ୍‌ରେ ଥିଲା । ମୁଁ କାଇଁ ନେବି, ସାର୍ ? ମା’ଙ୍କୁ ପଚାରନ୍ତୁ, ଏଡ଼େ ସାହସ କେବେ କରିଛି ?’’

‘‘ମା’ଙ୍କୁ କାହିଁକି ସେଥିରେ ପୂରୋଉଚୁ ? ତୋର ଯଦି ଅସୁବିଧା ହେଲା, ତୁ ଫୋନ୍ କରି ଦେଲୁନି ? ନିୟମ ପାଖରେ ମୁଁ କ’ଣ କରିବି ?’’

ତା’ଠୁ ସବୁ ଶୁଣିଲାବେଳେ ମା’ ସେଇଠି ବସିଥାନ୍ତି ଅଥଚ କିଛି କହୁ ନ ଥାନ୍ତି, ଏହା ମୋତିରାମକୁ ଆଶ୍ଚର୍ଯ୍ୟ ଲାଗୁଥାଏ । ମଣିଷ ଚିହ୍ନିଛି ବୋଲି ବଡ଼ ପତିଆରା ତା’ର ଥିଲା । ନିଜର ବିଶ୍ୱାସ ଏବଂ ଅବିଶ୍ୱାସ ଯେତେବେଳେ ପରସ୍ପର ବାଡ଼େଇ ହେଲେ, ସେ କାନ୍ଦି ପକେଇଲା । କହିଲା, ‘‘ହଜୁର୍, ସେ ବାଲୁଙ୍ଗାଟା କଥା ଭାବି ଭାବି ସ୍ତ୍ରୀ ବିଛଣା ଧରିଥିଲା । ସେଇ ଦିନ ରାତିରେ ମୋ ସଂସାର ଉଜୁଡ଼େଇ ସେ ଚାଲିଗଲା, ସାର୍ ।’’

‘‘ଆଇ ଆମ୍ ସରି । ତୁ ମୋତେ ପରେ ଦେଖାକର ।’’

ଶାନ୍ତ୍ୱନା, ତାହା ପୁଣି ଏତେ ସଂକ୍ଷିପ୍ତ ? ଷ୍ଟେନୋ ବାବୁଙ୍କ କାନ୍ଦିବାର ଉପଦେଶ ସଠିକ୍ ଭାବେ ମାନି ପାରି ନ ଥିବାରୁ ମୋତିରାମ ବେଶୀ ଦୁଃଖ କରୁଥିଲା ।

ପରବର୍ତ୍ତୀ ବର୍ଷେ କାଳ ଯେତେ ଚେଷ୍ଟାକଲେ ମଧ୍ଯ ମୋତିରାମ ଆଉ ହଜୁରଙ୍କୁ ଦେଖାକରିପାରିଲା ନାହିଁ । ଆଲାଉନ୍‌ସ ପାଇନି । ତେଣୁ ଲାଳକୁ ଅମୃତ ମଣି ତଥାପି ଚୁଷୁଥାଏ । ବଙ୍ଗଳାରୁ ସାହେବ ଯିବା ବାଟରେ ମୋତିରାମ କାକୁତି ହୋଇ ଅନାଏ । ଅନ୍ୟ କେଉଁ କାରଣ ହେଉ ପଛେ, ସାହେବ ଯଦି କେବେ ଟିକେ ହସିଲା ମୁହଁରେ ମୋତିରାମ ଆଡ଼କୁ ଚାହିଁଦେଇଥାନ୍ତି, ସେ ଦିନ ତା'ର ଖୁସି କେତେ ! ବେଲମୁଣ୍ଡିଙ୍କ ସେବାରେ ନଡ଼ିଆ ବାଡ଼ାଏ ।

ଏମିତି ଏମିତି ମୋତିରାମ ହଜିଗଲା । ଅବଶ୍ୟ ସନ୍ଥରୁ ସମ୍ରାଟ ସମସ୍ତେ ଯେମିତି ହଜନ୍ତି ।

ବହୁ ବର୍ଷ ପରେ ସତ ମୁର୍ଦ୍ଦାରଟାଏ କେମିତି ଜୀଇଁ ଉଠିଲା, ସେଇ କାହାଣୀଟିର ନାଁ ଭାରତ ।

ବାପା ପକେଟରୁ ଗୋଟିଏ ମାସର ପୂରା ଦରମା ଟଙ୍କା ଚୋରାଇ ବମ୍ବେରେ ଫିଲ୍‌ମ ଆକ୍ଟର୍ ହେବାପାଇଁ ପ୍ରତିଜ୍ଞାନିଷ୍ଠ ମୋତିରାମର ଏକମାତ୍ର ସନ୍ତାନ ବା କୁଳ-ଲକ୍ଷଣ ସତ୍ୟବାନ ଛୁଆଟିଦିନୁଁ ଘରୁ ପଳାଇଥିଲା । ଫିଲ୍‌ମ ବା ପୋଷ୍ଟରରେ ତ କେହି ତା'ର କୌଣସି ରୂପ କେବେ ଦେଖି ନ ଥିଲେ, ହେଲେ ରେଳ ପ୍ଲାଟଫର୍ମର କାଚ ବନ୍ଧେଇ ବୋର୍ଡ଼ ଭିତରେ ଅନେକଙ୍କ ଗହଣରେ ସତ୍ୟବାନର ପାସ୍‌ପୋର୍ଟ ସାଇଜ୍ ଫଟୋ କେତେ ଷ୍ଟେସନ୍‌ରେ ଦେଖିବାକୁ ମିଳୁଥିଲା ।

ସତ୍ୟବାନ ବାବୁମାନଙ୍କ ପରି ବିଶିଷ୍ଟ ନାଗରିକ ଆମ ଗଣତନ୍ତ୍ରର ପ୍ରତୀକ । ତେଣୁ ଆଶ୍ଚର୍ଯ୍ୟ ନ ଥିଲା, ସେ ମନ୍ତ୍ରୀ ହେଲେ ।

ଅବକାଶ ଥାଏ ମନ୍ତ୍ରୀଙ୍କ ଗାଁରେ ତାଙ୍କ ମା'ଙ୍କ ନାଁରେ ଗୋଟିଏ ଚିକିତ୍ସାଳୟ ପ୍ରତିଷ୍ଠା । ଉଦ୍‌ଘାଟନ କଲେ ମୁଖ୍ୟମନ୍ତ୍ରୀ । ବ୍ୟସ୍ତତାଯୋଗୁ ପହଞ୍ଚିବାର ଦଶ ମିନିଟ୍ ଭିତରେ ଉଦ୍‌ଘାଟନ-ଉତ୍ସବ ଶେଷ କରି ଗେଟ୍ ସାମ୍ନାରୁ ମୁଖ୍ୟମନ୍ତ୍ରୀ ରାଜଧାନୀକୁ ହେଲିକେପ୍‌ଟରରେ ବାହୁଡ଼ି ଗଲେ । ସେତେବେଳକୁ ମଳୟରଞ୍ଜନ ସ୍ୱାସ୍ଥ୍ୟ ବିଭାଗ ଶାସନ ସଚିବ । ମନ୍ତ୍ରୀଙ୍କ ଖାତିରିରେ ଆହୁରି ଅନେକ ଅଫିସରଙ୍କ ପରି ସେ ସସ୍ତ୍ରୀକ ଆସିଥାନ୍ତି । କାର୍ଯ୍ୟକ୍ରମ ଅନୁଯାୟୀ ଯେଉଁ ମହିୟସୀ ମହିଳାଙ୍କ ନାଁରେ ଚିକିତ୍ସାଳୟ ପ୍ରତିଷ୍ଠା ହେଲା, ତାଙ୍କର ଏକ ତୈଳଚିତ୍ର ଉନ୍ମୋଚନ କରିବେ ଶାସନ ସଚିବ ।

ହୋମ ହେଲା, ନଡ଼ିଆ ଭଙ୍ଗା ହେଲା, ଧୂପ ଜଳିଲା । ମଳୟରଞ୍ଜନ ରେଶମ ଫିତାର ପାଟଫୁଲି ହାତରେ ଧରିଲେ । ସିଲ୍‌କ ପରଦାର କନା ହଲିଲା । ସାମ୍ନାରୁ

ଭିଡ଼ିଓ ଆଲୁଅ ପଡ଼ିଥାଏ । ମନ୍ତ୍ରୀ-ମାତାଙ୍କ ଚିତ୍ର ପୂରା ଖୋଲିଯିବା ପରେ ମଳୟରଞ୍ଜନ ସେଇଠି ଭୂଇଁରେ ଆଣ୍ଠୁମାଡ଼ି ନମସ୍କାର କଲେ । ଜନତାଙ୍କ ହାତ ତାଳିରେ ଗଗନ-ପବନ କମ୍ପିବା କଥା କହିଲେ ବେଶୀ ହୋଇଯିବ, ଅନ୍ତତଃ ଦର୍ଶକମାନଙ୍କ ଗହଣରେ ଥିବା ତନିମାଙ୍କ ମନ କମ୍ପି ଉଠିଥିଲା ।

ସେତେବେଳେକୁ ସେ ଜାଣିସାରିଲେଣି, ଏଇ ସେ କୁଳାଙ୍ଗାର ପୁଅ, ଯାହାର ବିଚ୍ଛେଦ ସହି ନ ପାରି ଡ୍ରାଇଭର ମୋତିରାମର ସ୍ତ୍ରୀ ବିଛଣା ଧରିଥିଲା ।

ମୋତିରାମ ! ତନିମା ମନେ ମନେ ହସିଦେଲେ । ମମତା ମଜୁମଦାର୍‌ର ସ୍ୱାମୀ ଏ ପର୍ଯ୍ୟନ୍ତ କଲେକ୍ଟର ବି ହୋଇ ପାରିନି ।

ଉନ୍ମୋଚନ ସହ ସଂକ୍ଷିପ୍ତ ଭାଷଣ ଦେଇ ଶାସନ ସଚିବ କହିଲେ, ''ଆମେ ସମସ୍ତେ ଜାଣୁ, ଶ୍ରୀମତୀ ମହାପାତ୍ର ଜଣେ ଦେଶଭକ୍ତ ଥିଲେ । ସେ ଥିଲେ ବୀରପ୍ରସବିନୀ.... ଇତ୍ୟାଦି ।'' ଉଭୟ କଲରା ଓ ରସଗୋଲା ଖାଇଥିବା ଲୋକ ବାନ୍ତି କଲାବେଳେ ରସଗୋଲାକୁ ପେଟ ଭିତରେ ଅଟକାଇ ରଖି କଲାରାକୁ ଉଦ୍‌ଗାରିବା ଇଚ୍ଛାଟି ଯେମିତି ନିହାତି ଅବାସ୍ତବ, ଆମ ଭାଷଣଦାତାମାନଙ୍କ ଅଭ୍ୟାସ ପ୍ରାୟ ସେଇଆ ।

ତନିମା ତୈଳ ଚିତ୍ର ନିକଟକୁ ଆସିଲେ । ଯୋଡ଼ ହସ୍ତରେ ପ୍ରଣାମ କଲେ । ସତ୍ୟବାନ ସେଇଠି ଠିଆହୋଇଥା'ନ୍ତି । ତନିମା ତାଙ୍କୁ କହିଲେ, ''ସାର୍, ଆପଣ ଆମର ପୁତ୍ର-ପ୍ରତିମ । ମୋତି ବାବୁ ଆମ ପରିବାରର ଲୋକ ଥିଲେ । ମଳୟ ଯଦି କିଛି ଧାର୍ମିକ ଗୁଣ ଶିଖିଥା'ନ୍ତି, ତାହା କେବଳ ଆପଣଙ୍କ ପୁଣ୍ୟଶ୍ଳୋକ ପିତାଙ୍କଠାରୁ ।''

ପୂର୍ବପୁରୁଷଙ୍କ ଯଶ-ଗାଥା ପରି ଭାଟସ୍ତୁତି ଶୁଣି କେଉଁ ସମ୍ରାଟ ମୁଗ୍‌ଧ ନ ହୁଅନ୍ତି ଯେ !

ସମୟର ଅଳ୍ପ ବ୍ୟବଧାନରେ ସାତ ଜଣଙ୍କୁ ସୁପରସିଡ୍ କରି ମଳୟରଞ୍ଜନ ଯେଉଁ ଦିନ ଆଡିସ୍‌ନାଲ୍ ଚିଫ୍ ସେକ୍ରେଟାରୀ ହେଲେ, ଷଡ଼ଯନ୍ତ୍ରର ଚକ୍ରବ୍ୟୂହକୁ ଆଢୁଆଳ କରି ଆନନ୍ଦ ଉଲ୍ଲାସର ହରିହାଟ ଭିତରୁ ନିରୋଳା ସମୟ ଟିକେ କାଢ଼ି ସ୍ୱାମୀ-ସ୍ତ୍ରୀ ବସି କଥା ହେଲେ । ''ତନିମା, ୱାଜ୍ ନଟ୍ ମୋତିରାମ ଏ ଗୁଡ୍ ଚ୍ୟାପ୍ ?''

ତନିମା କହିଲେ, ''ଡିଅର୍, ମୁଁ ତୁମକୁ କହି ନ ଥିଲି, ତା ଉପରେ ମୋତେ ରାଗିବନି ବୋଲି ?''



# ପାଉଁଶ ପିତୁଳା

ମଧୁର ସମ୍ପର୍କର ଯେଉଁ ଯୁବକପାଇଁ ଆମର ଏ ଗପଟି ନିବେଦିତ, ତା' ନାଁ ତୀର୍ଥଙ୍କର । ଚାକିରି ବା ରୋଜଗାର ଜୀବନ-ପଣିକିଆର କାହାଣ ପଣ ବୋଲି ଯଦି ବିଚାର କରାଯାଏ, ତାହେଲେ ସେ ଜଣେ ପ୍ରତିଷ୍ଠିତ ବ୍ୟକ୍ତି । ଯାହା ମୁଁ ଗ୍ରାହ୍ୟ କରି ନାହିଁ, ତୀର୍ଥଙ୍କର ସମ୍ପର୍କରେ ତା ଭଉଣୀର ମତ ହେଲା, ସେ କୁଆଡ଼େ ଆଗୁରୁ ଭଲ ପିଲାଟିଏ ଥିଲା । ମାତ୍ର କବିତା ଲେଖାଲେଖି କରିବାପରଠାରୁ 'ଖରାପ' ହୋଇଯାଇଚି । ତା'ର ଗୋଟିଏ କଥା ସକାଶେ ପରିବାର ଲୋକେ ଅବଶ୍ୟ ଚିନ୍ତିତ ଥିଲେ । ଏଇ ସନ ତାକୁ ତିରିଶ ପୂରିବ । ଅଥଚ ବାହାଘର କଥା ଉଠାଇଲେ ସେ ବାଁକାଲିଆ ମାରୁଥାଏ । ହଁ କହେନି କି ନାଇଁ କହେନି । ଯେଉଁ ଗୁମର ଆଚରଣକୁ ସାଧାରଣତଃ ପ୍ରେମ ବୋଲି ଅନୁମାନ କରାଯାଏ, ସେ କଥା ବି ପଚରାଗଲା । କହିଲା, ନାହିଁ ।

ଥରେ ମୁଁ ତାକୁ ନିରୋଳାରେ କତିକି ଡାକିନେଲି । ''ହଇରେ, ନିଜ ପୁଂସ୍ତ୍ୱରେ କିଛି ଭେଜାଲ ଅଛି କି ? ବା ସଂସାରକୁ ଡରୁଚ କି ? ବା ଆଉ କାହାରି ବୈବାହିକ ଜୀବନ ତୋ ମନରେ ଭୀତିପ୍ରଦ ଭାବେ ରେଖାପାତ କରିଛି କି ? ବା ସଜାଡ଼ି ନ ହେବା ପରି ନିଜ ମନ ସହିତ କିଛି ବିପ୍ଳାତ କରିଛୁ କି ?''

ସବୁ ପ୍ରଶ୍ନର ଉତ୍ତରରେ ନା ନା କହି ସେ ପ୍ରସ୍ତାବ ଦେଲା, ''ତୁମେ ଏମିତି ପଚାରି ଚାଲ । ମୋ ମନର କେନ୍ଦ୍ରବିନ୍ଦୁ ଯେଉଁଠି ଛୁଇଁବ, ସେଇଠି ମୁଁ ହଁ ମାରିଦେବି ।''

''ହଁ ବେ...ଶାମୁକା ଖୋଜିବାକୁ ସମୁଦ୍ର ମନ୍ଥିବି ? ବାଲିଘରଡ଼ା ଉଣ୍ଡାଳିବାକୁ ଏଭେରେଷ୍ଟ ଚଢ଼ିବି ନା ? ଶ.... ଯେଉଁ ଖଣ୍ଡିଏ ଚୁନଟୀ ଆଣିଛି ତାକୁ ଟିକିଏ ହକାଳି ଦେଲେ ଯେତିକି ବାହରୁଚି, ସିଏ ଗୋଟାଏ ମହାଭାରତର ରଙ୍ଗ । ତୁ ବାହା ନ ହ ବେ । ମୋର କ'ଣ ହେବ ? କିନ୍ତୁ କହିଦେଉଛି, ମନେ ରଖିଥା, ଏଥର ମତେ ଅଥରିଟି ମିଳିଛି । ଆଜି ତୋ ସହିତ ଯାହା କଥାବାର୍ତ୍ତା ତାହା ହିଁ ଫାଇନାଲ । ନ ହେଲେ, ଯା ପରେ ଶୁଭଙ୍କରର ବାହାଘର କଥା ଉଠିବ ।'' ଏହା ମୁଁ ଜାଣି

କହିଥିଲି । ଶୁଭଙ୍କର ତା' ସାନ ଭାଇ । ଯଦି ଇଏ କୌଣସି ଅବ୍ୟକ୍ତ ଗୁପ୍ତ ବ୍ୟାପାରରେ ମଗ୍ନ ଥାଏ ତା'ହେଲେ ଚଅଟ୍ କରି ହଁ ମାରିଦେବ । କାରଣ, ମନ୍ଦିର ବା ରେଜେଷ୍ଟ୍ରି ଅଫିସ ମୋଟୁରୁ ପଚାରନ୍ତି ନାହିଁ : କିରେ, ତୁ କିଆଁ ତୋ ସାନଭାଇ ଠାରୁ ପଛରେ ବାହା ହେବାକୁ ଆସିଲୁ ?

ସେ ହଁ ମାରିଲା ନାହିଁ । କିନ୍ତୁ, କୌଣସି କାରଣରୁ 'ଗେଟ୍ ଆଉଟ୍' ଶୁଣି ତଥାପି ନ ପଳାଉଥିବା ଲୋକଙ୍କ ପରି ସେ ଚାକୁଲେଇ ହେଲା । ଆମ ଦି'ଜଣଙ୍କ କଥାବାର୍ତ୍ତା ଆଉ ଆଗେଇବା ସମ୍ଭବ ହେଲା ନାହିଁ । କାରଣ ତା' ଭଗ୍ନୀ ତଥା ମୋ ଜୀବନ ନାଟକର ଲାଇଟ୍ ମ୍ୟାନ୍ ପହଞ୍ଚି ଡାକିଲେ, ''ଖାଇବ ଆସ'' । ଆଃ, ପୋଡ଼ା କଲରା ଛେଚା ପରି କି ଲଳିତ ସେଇ ନିର୍ଦ୍ଦେଶ । ତୀର୍ଥଙ୍କର କହିଲା, ''ଟିକେ ରହ ମ ।'' ମୁଁ କିନ୍ତୁ ଉଠିଯାଇଥିଲି । ସେ ବା କାହା ସାଙ୍ଗରେ କଥାବାର୍ତ୍ତା କରିଥାନ୍ତା ? ତେଣୁ ସେ ବି ଉଠିଗଲା ।

କଥା ସେଇଠି ଅଟକିଗଲା । ଷ୍ଟେସନରେ ଗାଡ଼ି ପହଞ୍ଚିବାକୁ କୋଡ଼ିଏ ମିନିଟ୍ ଡେରି ହୋଇଥିଲା । ଅନ୍ୟ ବିଷୟରେ ଗପ ହେଉଥିଲୁ ସିନା, ତା' ବାହାଘର କଥା ଆଉ ଉଠୁ ନଥିଲା । ଗାଡ଼ି ଛାଡ଼ିଲାବେଳକୁ ସେ ଚୁଙ୍ଗ୍‌ଚୁଙ୍ଗ୍ ହୋଇ କହିଲା, ''ଭାଇ, ମୁଁ ତୁମକୁ ଚିଠି ଦେବି ।''

ପ୍ଲାଟଫର୍ମରେ ଦୌଡ଼ି ଦୌଡ଼ି ତାକୁ ପଚାରିଲି, ''କୋଉ କଥା କିରେ ?''

''ଖରାବେଳେ ଆମେ ଯେଉଁ ବିଷୟରେ କଥାବାର୍ତ୍ତା ହେଉଥିଲେ ।''

ମନେ ମନେ ବିସ୍ତର ହସିଲି । ଭାବିଲି, ଇରେ ଗେଡ଼, ତୁ କେତେ ବାଟ ଯିବୁ ? କୋଉ ଦୂରରୁ କାମଦେବର ଫୁଲଶର ହଲିଥିଲା ବୋଲି ତିଖ କୈଳାସରେ ଶିବଙ୍କ ତାଡ଼ ତମ୍ବୁରା ହଲିଥିଲା । ତୁ ତ ନାନା ହୁନ୍ଦରର ନରଟିଏ ମାତ୍ର !

କେତେ ଦିନ ବିତିଗଲା । ଚିଠି ଆସିଲା । ଅକ୍ଷର ଦେଖି ଜାଣିଲି ତାହା ତୀର୍ଥଙ୍କରର । ଲଫାପା ଉପରେ ଇଂରାଜୀରେ ଲେଖିଥାଏ 'ଗୋପନୀୟ' । ବିଚରା ବିର୍କଳିଆଟା । ଘରେ ତ ଆମେ ଦି' ଜଣ । ମୃଗ ଓ କସ୍ତୁରୀ । ତା' ଚିଠିର ବିଷୟବସ୍ତୁ କେମିତି, କେତେ, କାହାଠାରୁ ଗୋପନ ରହି ପାରିଥାନ୍ତା କେଜାଣି ? ଚିଠିଟିକୁ ପତ୍ନୀ ପ୍ରଥମେ ଖୋଲିଥିଲେ । ସେ ତାହା ପଢ଼ି ଏକଦମ୍ ସ୍ଥିର ନିଶ୍ଚିତ ହୋଇଗଲେ ଯେ ତୀର୍ଥଙ୍କର ପାଗଳ ହୋଇଗଲାଣି । ବୋଧହୁଏ କେଉଁ ସମ୍ପାଦକଙ୍କ ପାଖକୁ ପଠାଇବା

କାଗଜ ଖଣ୍ଡିକ ସେ ଏଠାକୁ ପଠାଇଦେଇଚି । ତେଣୁ ହୁଏତ ଏଠିକା ଚିଠି ଆଉ ଲଫାପାରେ ପଶିଥାଇପାରେ ।

କାଗଜଟିରେ 'ପୂଜନୀୟ, ମାନନୀୟ, ଇତି, ଆପଣଙ୍କର' କିଛି ନାହିଁ । ଛୋଟିଆ କବିତାଟିଏ । ତାହା ଥିଲା : ଭ୍ରୁଲତାକୁ ଛୁଇଁ ନ ଉଡ଼ିଲେ ଝରାକେଶ/କମ୍ର ଆନନେ ନ ଝରିଲେ ଦରହାସ/କଟୀ କିଙ୍କିଣୀ ଝୁମୁଝୁମୁ ନାଇଁ ବାଜେ/କୁରରୀ ନୟନ ଯଦି ନ ନୁଅଇଁ ଲାଜେ । ତଳ ପଙ୍କଚର୍ ଉପର ଜବର/ସେମିତି ତରୁଣୀ ଅବା/ପାରିବ ବାହି/ମୋ ଜୀବନଟା ଯାହା/ପିଓର ମେଘନା ବିଡ଼ି ପଶିଥିବା/ଖାଲି ସିଗ୍ରେଟ ଡବା ।

କବି ବନ୍ଧୁମାନଙ୍କ କବିତା ଶୁଣି ମୋର କିଛି ଆଇଡିଆ ଥିବା କଥା ମୁଁ ଭାବେ । ତେଣୁ ପୂର୍ବାପର ସଂଗତି ସହ ମୁଁ ଅନୁମାନ କରିପାରିଲି, ତୀର୍ଥଙ୍କର କିଛି କହୁଛି । ସ୍ତ୍ରୀଙ୍କ ମତାମତକୁ ଗରଉଆଜିବ ବୋଲି ମଧ୍ୟ ଭାବି ପାରୁ ନ ଥିଲି । ଇଏ ଗୋଟେ ଷୋହଳ ସତର ବର୍ଷିଆ ପିଲାଙ୍କ ଭଳିଆ କନକନ କ'ଣ ହେଉଛି ? କଥା ବଦଳରେ କବିତା ଲେଖୁଛି କିଆଁ ?

ଯାହା ହେଉ, ପରେ ସେ ମୋର ଦେଖା ହେଲା । ମୋର ଅନୁମାନ ସତ ଥିଲା । ସେ କାହାକୁ ବାହା ହେବ, ସେପରି କେହି ନିଶ୍ଚିତ କୁମାରୀ ନ ଥିଲେ । ତା' ଇଚ୍ଛା ଭାରି ରୋମାଣ୍ଟିକ ଥିଲା । ରୂପ, ମନ, ଆଚାର ଓ ସଂଭ୍ରମତା ସବୁକୁ ଏକାକାର କରି ସେ ଏପରି କନ୍ୟାଟିଏ ଖୋଜୁଥିଲା, ଯାହାର ପଣତ ତଳେ ସେ ନିଜକୁ ସମର୍ପଣ କରିଦେଇପାରିବ । ପୂର୍ବରୁ ପଠାଇଥିବା କବିତାରେ କୁଆଡ଼େ ଏହା ହିଁ ଥିଲା ତା'ର ବକ୍ତବ୍ୟ । ସେ ମୋତେ ଜିଗର ଲଗାଉଥିଲା, "ସେମିତିଆ ଝିଅଟିଏ ତୁମେ ଖୋଜ ।"

"ମୋର ସାମର୍ଥ୍ୟ ? ସାମ୍ଭୁଲ ତୋ ଭଉଣୀ । ସେମିତିକା ହେଲେ ଚଳିବ ? କାହିଁକି କେଜାଣି, ସେ ଚୁପ ରହିଲା । ମୋ କଥାକୁ ଖୋଲା ଅପସନ୍ଦ କରିଥିଲେ ମୁଁ ତା ଉପରେ ନିଶ୍ଚୟ ରାଗି ଯାଇଥାନ୍ତି । "ପୁରୁଷ ନିଜକୁ ସମର୍ପଣ କରିବା ଛଡ଼ା ଆଉ ବଡ଼ କାମ କରେ କ'ଣ ଯେ, ତୁ ଏମିତି ନବଗ୍ରହକୂଟ ସନ୍ଧାନରେ ବସିଚୁ ?"

ଅଭିଜ୍ଞତାର ଶିଳାଲେଖରୁ ଯେତିକି ମୁଁ ବୁଝିପାରିଥିଲି, ସବୁ ତାକୁ କହିଦେଲି । ଏଣିକି ନିଜ ବିଷୟରେ ସିଦ୍ଧାନ୍ତ ସିଏ ନେଉ ।

ପାଉଁଶକୁ ଓଦା କରି ଛାଞ୍ଚରେ ପୂରାଇ ମୂର୍ତ୍ତିଟିଏ ବାହାର କଲେ ତାହା ପଥର ପରି ଖୁନ୍ଦା ଅବଶ୍ୟ ଦେଖାଯାଏ । ତା ମାନେ ନୁହେଁ, ସିଏ ଦମ୍ଭ । ଭୁସାଟିଏ ମାରିଲେ

ଗଦା ହୋଇ ପଡ଼ିବ । ସବୁ ପୁରୁଷ ସେଇଆ । ତଥାପି ମୂର୍ତ୍ତିଗୁଡ଼ିକ ଅଛନ୍ତି କାହିଁକି ? କାରଣ, ରକ୍ଷୟିତ୍ରୀମାନେ ଚାହାନ୍ତି, ସେମାନେ ଥାଆନ୍ତୁ ବୋଲି ।

ଶୂନ୍ୟଟିଏ କିପରି ସବୁକୁ ଆବୋରି ବସିଥାଏ । ତହିଁର ଏକମାତ୍ର ଉଦାହରଣ ହେଲା ପୁରୁଷ । ସ୍ତ୍ରୀ ତା' ସ୍ୱାମୀର ଅର୍ଦ୍ଧାଙ୍ଗିନୀ । ମାନେ, ପୁରୁଷର ଫିଫ୍‌ଟି ପର୍‌ସେଣ୍ଟ ଗଲା । କେଉଁଠି ଶୁଣିଚୁ, ପୁରୁଷ ତା' ସ୍ତ୍ରୀର ଅର୍ଦ୍ଧାଙ୍ଗ ?

ଯେଉଁ ପଚାଶ ପର୍‌ସେଣ୍ଟ ରହିଲା, ସେଥିରୁ ପଞ୍ଚାୟତ ରାଜ ଆଇନ ଓ ସଂରକ୍ଷଣ ନିୟମ ଜରିଆରେ ଗଲା ତିରିଶି । ଆଉ ରହିଲା କୋଡ଼ିଏ । ହଇରେ ସମୁଦ୍ର ନଈକୁ ଟାଣେ ନା ନଈ ସମୁଦ୍ରକୁ ଟାଣିପାରେ ? ଅଶୀ ପରସେଣ୍ଟ କୋଡ଼ିଏ ପରସେଣ୍ଟକୁ ଓଟାରି ନିଏ ଥିରି ଥିରି ଚୋରା ବାଲିରେ ଚିର ବିସ୍ମୃତ ପଦଯୁଗଳ ପରି ।

''ଘରେ କିଛି ନାହିଁ । ଯା' ମ ଆଣିବ ।'' ଝଡ଼ ହେଉଥାଉ, ବର୍ଷା ହେଉଥାଉ, ତୁ ଯେମିତି ହେଲେ ବାହାରିବୁ । ଗଲା ତୋ ଅଧିକାରରୁ ପାଞ୍ଚ ପର୍‌ସେଣ୍ଟ ।

''ମୁଁ ଘର କାମ କରୁଚି । ତୁମେ ଛୁଆକୁ ହୋମଓ୍ୱାର୍କ କରାଇ ଦିଅ ।'' ଯେତେ ମାଡୁଥିଲେ ବି ଆଉ ତୁ କବିତା ଲେଖି ପାରିବୁନି ।''

ତୁ ଜମି କିଣିବୁ । କୋଠା କରିବୁ । ନିଜ ନାଁରେ କିଛି ପାରିବୁନି । ଭିଜିଲାନ୍‌ସ ଧରିବ । ଜଗତରେ ଆଉ କାହାରିକୁ ତୁ ବିଶ୍ୱାସ କରିପାରୁ ନ ଥିବୁ ସେତେବେଳକୁ । ତେଣୁ ସ୍ତ୍ରୀ ନାଁରେ ସବୁ କରିବୁ । ଧରାଯାଉ, ଏଥିପାଇଁ ପାଞ୍ଚ ଗଲା । ଆଉ ରହିଲା ମୋଟରୁ ପାଞ୍ଚ ।

ନାଇଣ୍ଟିଫାଇଭ୍ ପର୍‌ସେଣ୍ଟ ସମର୍ପଣ ପରେ ତୁ ସଂପୂର୍ଣ୍ଣ ଓଲୁଟିଏ ହୋଇସାରି ଯେତେବେଳେ ଭାବିବୁ, ମୁଁ ଟିକେ ଗାର୍ହସ୍ଥ୍ୟ ଜଞ୍ଜାଳରୁ ମୁକ୍ତି ପାଇବା ଉଚିତ, ସେତିକିବେଳେ ଶୁଣିବୁ : ଏ ସଂସାର କାହାର କି ? ଛଟପଟ ହୋଇ ଭାବୁଥିବୁ, ମଥାର ମାପ ନେଇ ବଣିଆ ମୁକୁଟ କରିଥିଲା ବା ମଥାକୁ କାଟିକୁଟି ସାଇଜ କରି ତୁ ପ୍ରାପ୍ୟ ମୁକୁଟ ଭିତରେ ପୂରାଇ ତାକୁ ନିଜର ନିଜର କହି ବଡ଼ତି ଦେଖାଇ ହେଉଥିଲୁ !

ସବୁ ଶୁଣିସାରି ତଥାପି ତୀର୍ଥଙ୍କର କହିଲା, ''ନାଇଁ ଭାଇ, ତୁମେ ହିଁ ଦେଖିଲେ ମୁଁ ରାଜି ହେବି ।'' ମୁଁ ଭାବିବାକୁ ବାଧ ହେଲି, ହାୟ, ପାଉଁଶ ପିତୁଳା ହେବାପାଇଁ ବି କି ଗୋପନ ଆତୁରତା !



# ଆତଙ୍କ

ମୁଁ ଯାଙ୍କ କଥା ନ ମାନି ବଡ଼ ଭୁଲ କରିଛି । ପତି ପରମ ଗୁରୁ—ଏହାଠୁଁ ବଳି ସତ୍ୟ ଏ ସଂସାରରେ ନାହିଁ । ଗୋଟିଏ ପରେ ଗୋଟିଏ ଅସୁବିଧା ହାବୁଡ଼ିଲାବେଳକୁ ବିଚାରୀଟିର ଏଇ କଥା ମନେପଡ଼େ । ଅନେକ ଅଭିଜ୍ଞତାକୁ ଯୁଗ ଯୁଗ ଧରି ପରଖି ନ ଥିଲେ ନୀତିଶାସ୍ତ୍ର ଏ କଥା କହିଥାନ୍ତା କେମିତି ?

ସେ ମୋଟେ ନିଜ ସାହସ ହରାଇ ନ ଥାଏ ।

କେବଳ ଭଲ ବୋହୂଟିଏ ନୁହେଁ, ଭଲ ଝିଅ ଭାବେ ତା' ସମୟର ସଦରଜମା ବି ଗୌରବରେ ଭରପୂର ଥିଲା । ସେ ଥିଲା ପ୍ରଥମ ବ୍ୟାଚର ମହିଳା କାରାଟେ । ସମୁଦାୟ ଶିକ୍ଷା ପରିଶେଷରେ ମଧ୍ୟ ସ୍ନାତକୋତ୍ତର ଗଣିତରେ ସେ ବିଶ୍ୱବିଦ୍ୟାଳୟ ସ୍ତରରେ ଗୋଲ୍ଡ ମେଡ଼ାଲ୍ ପାଇଥିଲା । ଓଡ଼ିଶୀ ନର୍ତ୍ତକୀ । କବିତା ଲେଖୁଥିଲା । ଝିଅମାନଙ୍କଦ୍ୱାରା ପ୍ରଥମ ରକ୍ତଦାନ ଶିବିରର ଆୟୋଜନ ସିଏ କରିଥିଲା । ସେତେବେଳେ ବୁଢ଼ା ବୁଢ଼ା ଅଧ୍ୟାପକ ବି ସନ୍ଦେହରେ ପଡ଼ି ଭାବୁଥିଲେ, ଝିଅମାନଙ୍କ ରକ୍ତ କୋଉ କାମକୁ ଲାଗେ ମ ! ଲାଳିତ୍ୟ, ରୂପ, ସୌଷ୍ଠବର ଏକ ସମାନୁପାତିକ ଚେହେରାଟି ପାଇଥିବାରୁ ତାକୁ କେବେ କେହି ଅଣ୍ଡିରୀଚଣ୍ଡୀ କହିପାରି ନ ଥିଲେ । ଏଇ ଶବ୍ଦଟି ତାକୁ ଜଣେ ମାତ୍ର କହୁଥିଲା । ତା' ବୋଉ । ସେ ଖାତିରି କରୁ ନ ଥିଲା ତା' କଥାକୁ ।

ନିଧି ସାଆନ୍ତେ, ଶ୍ୱଶୁରଙ୍କ ମାମୁଁ । ଶାଶୁଘର ଗାଁ । ସହର ପରି ସେଠି ରିସେପ୍ସନ୍ ହୁଏ ନାହିଁ । ବେଦୀ କାମ ସାରିଲା ପରେ ଭୂଆସୁଣୀମାନେ ହୁଳହୁଳୀ ପକାଇ ବନ୍ଦାନ୍ତି । ଯିଏ ଯାହା ଦିଅନ୍ତି, ପୁରୁଷମାନେ ବି । ଜରି, ଷ୍ଟିକର କାରବାର ନ ଥାଏ । ନିଧି ସାଆନ୍ତେ ବେଦୀ କଡ଼ରେ ଠିଆହୋଇ କହିଲେ, ''ସୁନା ବୋହୂଲୋ, ମୁହଁ ଟିକେ ବୁଲେଇ ଦେଲୁ । ମୁଁ ଗେଲ କରିବି ।''

ଏ ବୁଢ଼ାଟା କିଏ ? ଝୁମିର ପାଦତଳ ମେଦିନୀ ଘୂରିଗଲା । ଅସଭ୍ୟ ବୁଢ଼ାଟା । ସେ ଆଖି ବୁଜିଦେଇଥିଲା । ବୁଢ଼ା ତା' ହାତକୁ ଗୋଟିଏ ପ୍ୟାକେଟ ବଢ଼ାଇଦେଲା ।

''ମା' ଲୋ, ରଖିଥିବୁ । ଲିଜର୍ ପାଇଲେ ଦେଖିବୁ ।'' 'ଲିଜର୍' ପରି ଶବ୍ଦ ଶୁଣି ଝୁମି ବୁଢ଼ାକୁ ଓଲ୍ଡ଼୍-ବ୍ରାଟ୍ ଅର୍ଚିନ ନ ଭାବିଲେ ମଧ୍ୟ ଖୁସୀ ହୋଇ ପାରୁ ନ ଥିଲା । ମାତ୍ର ଷଣେ, ସେ ଏମିତି ଏକ ଉପଢ଼ୌକନ ଦେଲା, ଯାହା ଥାଳିରେ ପଡ଼ିଲାନି ବା ଝୁମି ତାକୁ ଦେହରେ ପିନ୍ଧି ପାରିଲାନି ।

ନିଧି ସାଆନ୍ତେ କିଏ, ପରେ ଜାଣିଲା । ପ୍ୟାକେଟ ଖୋଲି ଦେଖିଲା । ଅନେକ ସମ୍ବାଦ ପତ୍ର । ଅସମନ୍ୱିତ ତାରିଖର । ତା'ରି ବିଷୟରେ ପ୍ରକାଶିତ ନାନାଦି ବିବରଣୀ, ଫଟୋ, ତା'ର କେତେକ କବିତା । ସେ ନିଧି ସାଆନ୍ତଙ୍କ ଗପ ପଢ଼ି ପାଠକୀୟ ଭାବ ବିନିମୟ କରିଥିବା କେତେ ଖଣ୍ଡ ତା' ନିଜ ଚିଠି ବି ସେଥିରେ ଥିଲା । ବୁଢ଼ାର ସ୍ୱ-ହସ୍ତାକ୍ଷରରେ ଗୋଟିଏ ଛୋଟିଆ ଚିଠି । ''ମା' ଲୋ ତୋ' ଆଦରର ନାଁ ଝୁମି ବୋଲି ଜାଣି ନ ଥିଲି । ଝିଅ ବେଳେ ତୁ ଯେମିତି ଭଲ ଝିଅଟିଏ ଥିଲୁ, ସେମିତି ଭଲ ବୋହୂଟିଏ ହେଲେ ବି ତୋ' ସଂସାର ହସିବ । ଇତି । ବାଞ୍ଛାନିଧି ମହାନ୍ତି ।''

ନିଧି ସାଆନ୍ତେ ଆଉ ନ ଥାଆନ୍ତି । 'ଅସଭ୍ୟ ବୁଢ଼ା'ଟାପାଇଁ କାନ୍ଦିବାକୁ ଇଚ୍ଛା କରି ବି ସେ କାନ୍ଦି ପାରୁ ନ ଥାଏ । ସମୁଦାୟ ଭେଟ ଥରଟିଏ । ନିଜେ ବି ସେ ତାଙ୍କୁ ଦେଖି ପାରିନି କାରଣ କିଛି ଲାଜ, କିଛି ଘୃଣାରେ ସେ ଆଖି ବୁଜିଦେଇଥିଲା । ଭୁଲ୍ ବୁଝିଥିବା ସାଆନ୍ତଙ୍କ କଥା ତା'ର ମନେ ପଡୁଥାଏ । ବିଧୁବନପାଇଁ ନୁହେଁ, ଅନେକ ଆଶାପାଇଁ ।

ହଳଦୀ ଲଗେଇ ବାଡୁଅ ପାଣି ଗାଧୋଇଲାବେଳେ ଝୁମିର ଅତୀତ ତା' ଠୁଁ ଉଡ଼ି ପଳାଇଥିଲେ । ସେ ସେମିତି ଅନେଇଥିଲା ଅଥଚ ଦେଖି ପାରୁ ନ ଥିଲା ବା ଯେମିତି ଦେଖିପାରୁଥିଲା ଅଥଚ ଭାବିପାରୁ ନ ଥିଲା । ଶଅଁବାଳୁଆ ଯେତେବେଳେ ପ୍ରଜାପତି ହୁଏ, ସିଏ ଆଉ କ'ଣ ତା' ପୁରୁଣା ଖୋଷା ଦେଖିବାକୁ ଆସେ କି ? ସେମିତି ତା' ଅତୀତ । ଗରିବ ଜମିଦାର ଘରର ଲମ୍ବା ଲମ୍ବା ପଥର ପାହାଚ । ଭିତରେ ଦାରିଦ୍ର୍ୟର ପ୍ରଦର୍ଶନୀପାଇଁ ବାହାରେ ନିଲଠ ନିମନ୍ତ୍ରଣ ପତ୍ର । ଝିଅମାନଙ୍କପାଇଁ ଅତୀତ ମାନେ ହିଁ ସେଇଆ ।

ଝିଅମାନେ ବାହାହେଲେ ପୁନର୍ଜନ୍ମ ଲଭନ୍ତି । ବିଗତ ସମୟର ସବୁ ପୁଷ୍ପଧ୍ୱଜୀ ଚିନ୍ତା ଓ ସ୍ୱପ୍ନ, ତୋଳା ଫୁଲରେ ପରିଣତ ହୋଇଯା'ନ୍ତି । ଆଶାମାନେ ହୁଅନ୍ତି କମ୍ର, କାନ୍ତିଯୁକ୍ତା, ପୁଣ୍ୟମୟୀ । ପ୍ରତିଶୟିତ ଜୀବନ, ତଥାପି ବି ସୁନ୍ଦର ଲାଗେ । ଝୁମି ଖୁସୀ, କାରଣ ଆବଶ୍ୟକ ସର୍ବସାଧାରଣ ସୂଚନା ଅନୁଯାୟୀ, ସେ ଭଲ ବୋହୂଟିଏ ବି

ହୋଇପାରିଛି । ଶାଶୂ-ଶ୍ୱଶୁର ହୋଇଛନ୍ତି ବାପା ବୋଉ । କଥା ଏକତରଫା ନୁହେଁ । ସେମାନେ ବି ଭାବନ୍ତି, ଆମ ଝିଅ । ଝୁମି ଭାବେ, ମଣିଷର ହୃଦୟଟା ଖୁବ ସରସ, ଭାରି ଉର୍ବର ଏବଂ ଏକ୍‌ଦମ୍ ଖାଲି । ନିଅତରେ ସେଠି ଯୋଉ ଫୁଲ-ଫଳ ଲଗେଇବ, ତୁମେ ଯେମିତି ଇଚ୍ଛା କରିବ ତାହା ସେମିତି ଫୁଟିବ, ସେମିତି ଫଳିବ । ସେଥିପାଇଁ କିଛି ହସ, କିଛି ଶ୍ରଦ୍ଧା ଓ ଯଥେଷ୍ଟ ଆନ୍ତରିକତା ଲୋଡ଼ା ।

ଏକା ବୟସ ଏବଂ ପ୍ରାପ୍ତ ସୁଯୋଗ ଅନୁଯାୟୀ ଅନେକ ଝିଅ ପ୍ରେମ କରୁଥିଲେ ମଧ୍ୟ ଝୁମି ସେସବୁପାଇଁ ମନ ବଳାଇ ନାହିଁ । କାରଣ, ଆଧୁନିକା ପରି ଜଣାପଡୁଥିଲେ ସୁଦ୍ଧା ତା' ମନଟି ଥିଲା ଅନେକ ପରିମାଣରେ ସଂସ୍କାରଗ୍ରସ୍ତ । ସଙ୍ଗଠିକା ପରି ଛାତ୍ରୀଟିଏ ହୋଇଥିବାରୁ ସେଥିଯୋଗୁ ସମୟ ଯାଉଥିବ । ପୁଅମାନଙ୍କ ପ୍ରଶଂସାକୁ ସେ ବିଶ୍ୱାସ କରୁ ନଥିଲା ବା ସେଥିରୁ ଉଦ୍ଦେଶ୍ୟ ଉଣ୍ଡାଳୁ ଥିଲା । ତେଣୁ ଜୟନ୍ତ ସହିତ ବିବାହ ପୂରାପୂରି ପ୍ରସ୍ତାବ-କୋଷ୍ଠୀ-ଜାତକମେଳ ଅନୁଯାୟୀ । ନରଗଣ-ଦେବଗଣାଦିର ମେଳକ ଥାଇ ସବୁମନ୍ତେ କୁଆଡ଼େ ଦୁଇ ଜଣଙ୍କର ରାଜଯୋଟକ ପଡ଼ିଥିଲା । ଏପରିକି, ଉଭୟ ପରସ୍ପରକୁ ଦେଖି ନ ଥିଲେ ।

ଆଦର କରିଥିବା ପରମ୍ପରା ସେମାନଙ୍କୁ ଧୋକ୍‌କା ଦେଇ ନାହିଁ । ଦୁଇ ଜଣଯାକ ବହୁତ ଖୁସୀ ।

ବିବାହ ଦୁଇ ବର୍ଷ ପୂରି ଗଲାଣି । ପଦାକୁ ଜଣାପଡୁ ନ ଥିବା ପରି ସରଳ ଜୀବନ । ଅଳ୍ପ ହସ, କିଛି ଦୁଶ୍ଚିନ୍ତା, ଛୋଟ ଛୋଟ ସ୍ୱପ୍ନ । ସବୁ ମିଶି ଅପାର ଅନୁରାଗ । ଏବେ ଭାବିଲେ ତାକୁ ଗୋଟିଏ ବିଷୟରେ ଲାଜ ଲାଗେ । ଆଗେ ସେ ଲୁଚେଇ ଲୁଚେଇ କେତେକ ଅନାଗତ ଆଶଙ୍କା ସହିତ ବାହାଘରକୁ ମିଶାଇ ଡରୁଥିଲା । ମୁଁ ବାହା ହେବି ନାହିଁ, ଏପରି ଖୋଲା ଘୋଷଣା ଅବଶ୍ୟ ସେ କେବେ କରି ନ ଥିଲା ବା ତାକୁ କେହି ପଚାରି ନ ଥିଲେ ମଧ୍ୟ ।

ସ୍ୱାମୀ ବେଳେବେଳେ ଝୁମିକୁ ତା' ଅତୀତ ମନେ ପକାଇ ଆଦରରେ କିଛି କହିଲେ ସେ ଚିଡ଼ିଯାଏ । କହେ, ''ତୁମ ପରିକା ସ୍ୱାମୀଟିଏ ପାଇ ମୁଁ ସଂସାର କରିବାରେ ସୁଖୀ ହେବି ନା ଓଡ଼ିଶୀ ନାଚିବି ?'' ଜୟନ୍ତ ତଥାପି ଚିଡ଼ାନ୍ତି । ଝୁମି ଚୁପ୍ ରହେ, ହସି ଦିଏ । ସ୍ୱାମୀଙ୍କୁ ନ ରଗାଇବା ବ୍ୟାପାରରେ ସେ ଯେମିତି ଜଣେ ରାଜଚକ୍ରବର୍ତ୍ତୀ ଶାସିକା । ସିଏ ବି ରାଗେ । ମାତ୍ର ସେତିକିବେଳେ, ଯେତେବେଳେ ସ୍ୱାମୀ ମନେ ମନେ ଟିକେ ଆକଟ ଖୋଜୁଥା'ନ୍ତି । ତା' ରାଗିବାର ଭାଷା ନିହାତି

ଅଲଗା ରକମ । ଦରକାର ପଡ଼ିଲେ ନିଜକୁ ଆକ୍ଷେପ କରି କହେ । 'ତୁମେ ଭାସିଯିବ' ପରି ନ କହି, କହେ 'ମତେ ଭସେଇ ଦବ ତୁମେ ।'

ଦିନକର କଥା । ରାତି ବିଳମ୍ବ ହୋଇଯାଇଥାଏ । ସେମାନେ ଗୋଟିଏ ଜନ୍ମଦିନ ପାର୍ଟିରୁ ଫେରିଥା'ନ୍ତି । ପୁରୁଷମାନଙ୍କର କେତେକ ପୁରୁଣାକାଳିଆ ମେଥଡ୍ ଅଛି । ଜୟନ୍ତ କେତେ ଜଣଙ୍କ ନାଁ ନେଲେ । ସ୍ୱାଭାବିକ, ଯେଉଁମାନଙ୍କୁ ଝୁମି ଚିହ୍ନେ ନାହିଁ । ''ସେମାନେ କହୁଥିଲେ, ତୁମେ ବହୁତ ସୁନ୍ଦରୀ ।'' ସ୍ୱାମୀଙ୍କ ମୁହଁରୁ ଏମିତିକା କଥା ଶୁଣିଲେ ଅନେକ ଅଭିଳା ହୋଇ ମୁଢ଼ି ବଦଳରେ ଚିକେନ୍ ପକୋଡ଼ା କରିବାକୁ ଆଗ୍ରହୀ ହୋଇପଡ଼ନ୍ତି ବା ଚା'ରେ ଅଧିକା ଦୁଧ ଦେଇ ବହଳିଆ କରିଦିଅନ୍ତି ବା ଅକାରଣରେ ଶାଢ଼ିକୁ ଉପର ତଳ କରି ପକାନ୍ତି । ଯଦିଓ, ଶାଢ଼ିର ଚଉଡ଼ା ବଢ଼ିବାର ନ ଥାଏ ବା ତନୁଶ୍ରୀ ଅନ୍ୟଭାବେ ବଙ୍କା ହୋଇ ପାରେ ପଛେ, ଛୋଟ ହେବାର ନଥାଏ । ଝୁମି ଏହାକୁ ନିହାତି ଅଲଗା ଭାବରେ ଗ୍ରହଣ କଲା । ''ତୁମେ ସେମାନଙ୍କ ସାଙ୍ଗରେ ନିଜ ମନ ବା ଆଖି ବଦଳା ବଦଳି କରିଚ କି ? ମୋତେ କହିଦବ । ମୁଁ ଆଗରୁ ମରିଯିବି ।'' ଏମିତିକା କଥା ଚାଟୁ ହେଲେ ବି ଭଲ ଲାଗେ ।

ସ୍ପର୍ଶ, ଚୁମ୍ବନ, ଆଲିଙ୍ଗନ ଯେତେ ଅଧିକ ଭାବେ ସମ୍ପାଦିତ ହୁଏ, ଦୁଇଟି ମଣିଷ ଇପ୍‌ସାର ଝଡ଼ ଭିତରେ ସେତେ ଅଧିକ ନିଃସଙ୍ଗତାରେ ଘାରି ହେଉଥା'ନ୍ତି । କାରଣ, ଝଡ଼ର କେନ୍ଦ୍ରବିନ୍ଦୁ ଆଉ କେଉଁଠି ଥାଏ । ଦୁଇଟି ଅଥୟ ଦେହ । ସମୟକୁ ନିଘା ନ ଦେଇଥା'ନ୍ତୁ ପଛେ, ରାତି ବାରଟା ବାଜି ସାରିଥିଲା । ଡୋର୍ ବେଲ୍ ବାଜିଲା । ଅସ୍ୱାଭାବିକ ନୁହେଁ, ଦୁଇ ଜଣଯାକ ଏକାସାଙ୍ଗରେ ଚମକି ପଡ଼ିଲେ । ଦେହ କିଛି ନୁହେଁ, କାରଣ ମନ ଉଡ଼ିଗଲା ।

ଜୟନ୍ତ ଦେଖିଲେ, ଟେଲିଗ୍ରାଫ୍ ବିଭାଗର ନାଇଟ ଡେଲିଭରି ବୟ । ଡୋର୍-ସ୍ଲଟ୍ ବାଟେ ରସିଦରେ ଦସ୍ତଖତ କରି ଟେଲିଗ୍ରାମ୍‌ଟି ଆଣିଲେ । ଏତେ ରାତିରେ ସହରୀ କବାଟ ଖୋଲା ଯାଏନି ।

ସବୁ ଓଲଟପାଲଟ ହୋଇଗଲା । ଝୁମିର ଶାଶୂଙ୍କ ଦେହ ଖରାପ ।

ନିଶ୍ଚୟ ଯିବାକୁ ହେବ । ଅଥଚ ରାତିଟା ପାହୁ ନ ଥାଏ । ଦୁଇ ଜଣ ଗପ ହେଉଥିଲେ । ବଡ଼ ବଡ଼ ଆଶଙ୍କା ପାଖରେ ଟିକି ଟିକି ଆଶାମାନେ ହୁଏତ ଦେଖାଯାଉ-ନ ଥିଲେ ବା ପହଞ୍ଚୁ ପହଞ୍ଚୁ ହଜି ଯାଉଥିଲେ । ପ୍ରକୃତି ଶୂନ୍ୟତାକୁ ସହି

ପାରେ ନାହିଁ । ଘୂର୍ଣ୍ଣିବାତ୍ୟା ସୃଷ୍ଟି କରି ନିଜକୁ ନିଜେ ଉଜାଡ଼ିଲା ପରି, ମନ ବି ଶୂନ୍ୟତାକୁ ସହି ପାରେ ନାହିଁ । ଆଶଙ୍କାର ଝଡ଼ ଉଠେ ସେଥିରେ ।

ପରଦିନ ଅଫିସରୁ ଫେରି ଜୟନ୍ତ ଯେଉଁ ଖବର ଦେଲେ, ତାହା ଉଭୟଙ୍କ ଭ୍ରାନ୍ତିକୁ ବଢ଼େଇବା ସାର ହେଲା । ଝୁମି ଘରକୁ ଯିବା ଲାଗି ପ୍ୟାକିଂ କରିସାରିଥିଲା । ଅନ୍ୟୁନ ଚାରୋଟି ଦିନ ପରେ ଜୟନ୍ତ ଛୁଟି ପାଇବେ, ବସ୍ ପ୍ରମିଜ୍ କରିଛନ୍ତି । ଆକାଶ ସମସ୍ତ ବିଭୀଷିକା ସହ ଝୁମି ମଥା ଉପରେ ଅଜାଡ଼ି ହୋଇଗଲା ଯେମିତି । ସେ କହିଲା, ''ନାଇଁ ମୁଁ ଆଜି ଯିବି । ତୁମେ ପରେ ଆସିବ ।''

''ବେକାର କଥା । ଛତିଶ ଘଣ୍ଟା ରେଳ ଯାତ୍ରା, ଭାରତୀୟ ରେଳବାଇର ଟାଇମ୍ ଟେବୁଲ୍ ଅନୁଯାୟୀ । ଆନ୍ଦୋଳନ, ସନ୍ତ୍ରାସବାଦ ଆଦି ସବୁ ବାଟରେ ପଡ଼ିବ । ରାଜା ଗଧ ଚଢ଼ିବାକୁ ମନ ବଳେଇଲେ ରାଜ୍ୟ ସାରା ଧୋବା ତୁଠ ଖାଲି ହେବା ପରି କଥାଟେ ହେବ ସିନା ! ବରଂ ବାପାଙ୍କୁ ଟେଲିଗ୍ରାମ କରିଦେବା, ଆମେ ଆଉ ଚାରିଟା ଦିନ ପରେ ପହଞ୍ଚୁଛୁ ବୋଲି ।''

''ବୋଉଙ୍କ ଦେହ ଖରାପ, ସିଏ ହୁଏତ ଖୋଜିଛନ୍ତି ବା ବାପା ଟେଲିଗ୍ରାମ କରିଛନ୍ତି । ଏସବୁ କ'ଣ ତୁମ ଦପ୍ତରର ଫାଇଲ କାମ କି ? ଟେଲିଗ୍ରାମ କଲେ ଦାୟିତ୍ୱ ତୁଟିଯିବ ?'' ଏମିତିକା ପୁଅ ? ଝୁମି ନିଜ ସ୍ୱାମୀଙ୍କୁ ବୁଝିପାରୁ ନ ଥାଏ । ତା'ର ଯେଉଁ ଅତୀତ କହି ଜୟନ୍ତ ତାକୁ ଚିଡ଼ୋଉଥିଲେ, ସେଇ ଗୁଡ଼ିକ ଅହମିକା ରୂପ ନେଇ ତା' ମନକୁ ଆସିଲେ । ''ତୁମେ କ'ଣ ଢିଙ୍କିକି କାଠ ବୋଲି ଭାବିଚ କି ?'' ସେ କହିଲା, ''ମୁଁ ଯିବି ।''

ତାହା ହିଁ ହେଲା । ପ୍ରାୟ ଚାଳିଶ ଘଣ୍ଟାର ରେଳଯାତ୍ରା । ନିଜ ମନର ଉଦ୍‌ବିଗ୍ନତା ଛଡ଼ା ଘଟଣା ଇ କିଛି ନ ଥିଲା ।

ଶାଶୁଘର ଗାଁ ଅଭିମୁଖେ ଯାଉଥିବା ବସ୍‌ରେ ବସିଲା ଝୁମି । ତା'ପରେ ତାକୁ ଯେମିତି ଲାଗିଲା ଯେ ସତକୁସତ ପାହାରୁଣିରୁ ସମା ହୁଗୁଳି ଗଲେ ଢିଙ୍କି କାଠ ହିଁ ହୋଇଯାଏ । ଗୌରବ, ପ୍ରତିଷ୍ଠା, ପରାକ୍ରମ କେବଳ କାଳାଶ୍ରୟୀ ନୁହଁନ୍ତି, ଆପେକ୍ଷିକ ସ୍ଥିତିଠାରୁ ଦୂରେଇ ଗଲେ, ସେମାନେ ହଜି ଯାଆନ୍ତି ।

ବୋଧେ କଲେଜ ପାଠରେ ଅସିଦ୍ଧ କଳାକାର ଟୋକା ଦି' ଚାରିଟା ତା' ସିଟ୍ ପାଖରେ ଠିଆହୋଇ କମେଣ୍ଟ୍ ମାରୁଥା'ନ୍ତି । ଇସ୍ କହୁଥା'ନ୍ତି ବହିର ଭାଷା, ଅଥଚ

ମତ୍ତ-ମାନସିକତାରେ ଅକାରଣରେ ଉଲଗ୍ନ ହୋଇ ପଡୁଥିବା ପରି ଅସଭ୍ୟ ସେଇ ଭାବଗୁଡ଼ାକ । ମାନସିକ ପ୍ରତିରକ୍ଷାପାଇଁ ଭାରତୀୟ ନାରୀମାନଙ୍କ ପାଖରେ ଥାଏ ଦୁଇଟି ଅସ୍ତ୍ର । ଲଜ୍ଜା ଓ ବାହାନା । ଝୁମି ଅନ୍ୟ କୌଣସି ଗ୍ରହରୁ ଆସି ଏ ପୃଥିବୀର କିଛି ଭାଷା-ଭାବ ବୁଝି ପାରୁ ନ ଥିବା ବୋକୀଟିଏ ପରି ବାହାନା କଲା । ଷ୍ଟୁପିଡ୍, ମୁଁ ଯଦି ଚାକିରି କରିଥା'ନ୍ତି ହୁଏତ ଏମାନେ ମୋର ଛାତ୍ର ହୋଇଥା'ନ୍ତେ ! ଏମିତି ଭାବିଲାବେଳେ ସେ ପାଖ କଥାଟି ଭାବି ପାରୁ ନ ଥାଏ । ଆଜିକାଲି ପିଲାଏ ମ୍ୟାଡାମ୍‌ଙ୍କୁ ବି ଛାଡୁ ନାହାନ୍ତି ।

ବସ୍ ଭିତରେ ଭିଡ଼ ଯେ ଭିଡ଼ । ତଥାପି କଣ୍ଡକ୍ଟର ଡାକି ଲୋକ ପୂରାଉଥାଏ । କେତେକଙ୍କର ଅର୍ଥନୀତି ସକାଶେ ସର୍ବସାଧାରଣଙ୍କ ଜୀବନ-ନୀତି ବିପର୍ଯ୍ୟସ୍ତ ହେବା ପରି, ଏ କ୍ଷେତ୍ରରେ ବସ ମାଲିକ ଓ ପ୍ୟାସେଞ୍ଜର ସଂପର୍କ । ସିଟ୍ ଭିତରକୁ ପଶି ଲୋକେ ଠିଆ ହୋଇଥା'ନ୍ତି । ବାଲୁଙ୍ଗା ଟୋକା ଦଳଙ୍କ ସକାଶେ ଅନ୍ତତଃ ଏ ହରକତରୁ ଝୁମି ନିସ୍ତାର ପାଇଛି । ପାଜିମାନଙ୍କର ବି ବେଳେବେଳେ ମୂଲ୍ୟ ଥାଏ । ବସ୍ ଚାଲିବା ଠାରୁ ଅଟକୁଥାଏ ବେଶୀ । ଦାର୍ଶନିକଭାବେ କହିଲେ, ଶାଶ୍ୱତିକ ଶୂନ୍ୟପାଇଁ ସମୟହୀନତା ଯେମିତି । ବସ୍ ପହଞ୍ଚିଲେ କେତେ, ନ ପହଞ୍ଚିଲେ କେତେ — ଚାଳକର ଏମିତିକା ମନୋଭାବ । ତଥାପି ସେ ନିଜ ହାତ ବ୍ୟାଗରୁ କାଗଜ ଖଣ୍ଡିଏ କାଢ଼ି ବାରମ୍ବାର ଦେଖି ନେଉଥାଏ, ସ୍ୱାମୀ ଲେଖିଦେଇଥା'ନ୍ତି । ଅମୁକ ପରେ ଅମୁକ ଷ୍ଟପେଜ ପରେ ଅମୁକ.... । ବିଭିନ୍ନ ଜାଗାର ଲ୍ୟାଣ୍ଡସ୍କେପ୍ । କେଉଁଠି କେଉଁ କଡ଼ରେ ମନ୍ଦିର, ଶୀତଳଭଣ୍ଡାର, ଟ୍ରାନ୍ସଫର୍ମର୍, ଟିଉବଓ୍ୱେଲ । ଯାହାହେଉ, ଗାଈଗୋରୁ ଶୋଇବା କଥା ଲେଖି ନାହାନ୍ତି ଯାହା । ପୁଅଗୁଡ଼ାକ ବାହା ହେଲେ ଡରୁଆ ହୋଇ ଯାଆନ୍ତି ବୋଧେ । ସେଇ ଅସଣ୍ଢଣା ଅବକାଶରେ ବି ତାକୁ ହସ ମାଡ଼ିଲା ।

ଗାଁ ବିଷୟରେ ସବୁ ଶୁଣି ଜାଣିଛି ସିନା, ମାତ୍ର ଅଭିଜ୍ଞତା ନାହିଁ । ବାହାଘର ପରେ ଶାଶୂ ଭାବୁଥିଲେ ବୋହୂ ଦିନାକେତେ ଗାଁରେ ରହୁ । ଶ୍ୱଶୁର ମନାକଲେ । "ବୋହୂକୁ ରଖ, କିନ୍ତୁ ପରେ ଇଚ୍ଛା କଲେ ଏଇ ସମୟଟା ଦୁଇଜଣଙ୍କୁ ଫେରାଇ ପାରିବ ତ ?" ଝୁମି ଆର ଘରେ ଥାଇ ଶୁଣୁଥିଲା । ତା'କୁ ଟିକେ ଲାଜ ଲାଗିଥିଲା ଅବଶ୍ୟ । ମାତ୍ର ଦୁଇ ଜଣଯାକ କେତେ ଭଲ ମଣିଷ ନୁହଁନ୍ତି ଟି ! ଚାନ୍ଦ ପିଟିବା ପରେ ସ୍ୱାମୀଙ୍କ ସହିତ ଦୂରକୁ ଗଲା । ମଝିରେ ମଝିରେ ଶାଶୂଙ୍କ କଥା ଭାବିଲେ ସେ ଭାବପ୍ରବଣ ହୋଇପଡୁଥିଲା ଓ କଇଁକଇଁ ହୋଇ କାନ୍ଦି ପକାଉଥିଲା । ଜୟନ୍ତଙ୍କ ଅନୁପସ୍ଥିତିରେ ଅବଶ୍ୟ । କାରଣ ଅନ୍ୟକୁ ନିଜର ଅଶ୍ରୁ ଦେଖେଇବା ପରି ଦୁର୍ବଳ ନ ଥିଲା ସିଏ ।

ସେ ଘର ଅଗଣାରୁ ମଝି ଆକାଶକୁ ଅନେଇ ନଡ଼ିଆ ଗଛର ଶିଖଗହଳି ଦେଖିଛି । ଦେଖିଛି ପାଇଖାନା, ପୋଖରୀ, ଖଳା ଓ ସେଇ ପଟର ଦିଗ୍‌ବଳୟ । ଥରେ ଶାଶୁ ତାକୁ ବାରିଆଡ଼କୁ ଡାକିନେଲେ । କହିଚାଲିଲେ ନାନା କଥା । ଦୂରରେ ଦେଖା ଯାଉଥିବା କେଉଁ ଏକ ଝୁଲା ବଟ ବା ଅସଂଖ୍ୟ ତାଳ ବଣ । କାହା ପାଖରେ ଅଢ଼େଇ ମାଣର ଗୋଟିକିଆ ଚକ, କୋଉଠି ସାତ ମାଣ ଆମ୍ବତୋଟା — ସବୁକୁ ଆଙ୍ଗୁଠି ଦେଖେଇ କହୁଥା'ନ୍ତି ଆଉରି କେତେ ସଂଲଗ୍ନ ସୂଚନା ସହ । ଝୁମି କେବଳ ଶାଶୂଙ୍କ ଆଙ୍ଗୁଠିକୁ ବୁଝିଲା ପରି ହଁ ମାରି ଚାଲିଥାଏ । ମୁଁ ତାଙ୍କ କଥା ସବୁ ବୁଝୁଛି ବୋଲି ସେ ଜାଣନ୍ତୁ । ଭଲ ! ଅଳ୍ପ ଛଳନା ଯଦି ଶ୍ରଦ୍ଧାପାଇଁ ଶାନ୍ତି ଉତ୍ପାଦନ କରିପାରେ ତାହା ନାନାଦି ସତ ଠାରୁ ମଧ ଯଥେଷ୍ଟ ଭଲ । ଶାଶୂଘର ଗାଁର ଭୂଗୋଳ ସମ୍ପର୍କରେ ଝୁମିର ଆଇଡିଆ ଏହାଠାରୁ ବେଶୀ ନୁହେଁ ।

ସାହସକୁ ସେ ଭଲ ପାଏ । ଶାଶୂ ନିଶ୍ଚୟ ପାଖ ପଡ଼ୋଶୀରେ କହିବେ, ମୋ ଧିଅ ଖବର ପାଇ ଆମ ଝୁମି 'ବିଦେଶ'ରୁ ଏକାଏକା ଚାଲି ଆସିଲା । ଆହ୍ଲାଦରେ ମନ ଅଇନା ଯେତେ ହଲି ଯାଉଥିଲେ ବି କଳ୍ପନାର କେତେ ଚମତ୍କାର ଚିତ୍ରଗୁଡ଼ାଏ ସ୍ଥିର ଭାବେ ଦେଖି ପକାଉଥାଏ ସିଏ । ଜୟନ୍ତ ଯେମିତି କହୁଥିଲେ ଟେଲିଗ୍ରାମ୍ କରିଥିଲେ କ'ଣ ହୋଇଥା'ନ୍ତା ? ଛି ଛି - ଯେତେ ପାଠୁଆ ହୁଅନ୍ତୁ ପଛେ, ପୁଅଗୁଡ଼ାକ ବୋକା ।

ଆଉ ଗୋଟିଏ କଥା ଭାବି ସେ ଚମକି ପଡୁଥାଏ । ଟେଲିଗ୍ରାମ୍ ପଠାଇବା ଠାରୁ ଆଜି ହେଲା ପାଞ୍ଚଦିନ । ହେ ମା' ମଙ୍ଗଳା, ତୁ ଭରସା ।

ଓହ୍ଲାଇଲାବେଳକୁ କିଟିକିଟି ଅନ୍ଧାର । ଘଣ୍ଟାକୁ ନିରୀଖେଇ ବି ସମୟ ଦେଖାଗଲାନି ! ଗାଁରେ ବିଜୁଳୀ ଅଛି ବୋଲି ଜାଣେ ସେ । ମାତ୍ର ଦୂରଦୂରାନ୍ତରେ ବି କୋଉଠି ଆଲୁଅ ଟିକେ ଜୁଳୁଜୁଳୁ ହୋଇ ଦେଖାଯାଉ ନ ଥାଏ । ସମୁଦାୟ ସହରୀ ଜୀବନ ବିତେଇଥିବା ବୋହୂଟିର ମନରୁ ମଫସଲର ସବୁ ରୋମାଞ୍ଚିତ ପୁଷ୍ପରାଗ ହଠାତ୍ ଖସିଗଲା । ବସ୍ ଭିତରେ ହେଲେ ଟିକେ ଆଲୁଅ ଥିଲା । ମନେ ମନେ ଖୋଜିଲା ଜଣେ ହେଲେ ଲୋକ କାହାକୁ ସେ ଦେଖନ୍ତା କି ।

ବ୍ରିଫ୍‌କେଶ୍ ଖଣ୍ଡିକ ଧରି ନାଳ ବନ୍ଧେ ବନ୍ଧେ ଚାଲିଲା ସେ । ଶୁଣିଚି, ପାଞ୍ଚ ମିନିଟର ବାଟ ।

ଆଗରେ କିଆ ଅମରୀ ବୁଦା । ଭିତରେ ମିଞ୍ଜି ମିଞ୍ଜି କିରୋସିନି ଆଲୁଅ ପରିକା ଦେଖାଯାଉଥାଏ । ଆଉ ପ୍ରାୟ ଶହେ ଗଜ ଗଲେ ସେଇ ବୁଦାଳିଆ ଜାଗାଟା

ଏକଦମ୍ କତିରେ ପଡ଼ିବ । ବସ୍‌ରେ ଶୁଣିଥିବା କଥାବାର୍ତ୍ତା ତା'ର ମନେ ପଡ଼ିଲା । କିଏ ସବୁ କଥା ହେଉଥିଲେ । ନୀଳମାଧବପୁର ସରପଞ୍ଚ କରିଚି ଗୋଟିଏ ଦାରୁ ଭାଟି । ଏଇ କି ସେଇ ଦାରୁ ଭାଟି ।

ଆଲୁଅରେ ଦମ୍ଭିଲା ଝିଅର ସାହସ ଅନ୍ଧାରରେ ପାଣି ଫାଟିଗଲା । ବସ୍‌ବାଲାକୁ ମନେ ମନେ ଅଭିସମ୍ପାତ କଲା । ପାସେଞ୍ଜର ଲୋଭରେ ଡେରି ଡେରି କରି ନ ଚଲେଇଥିଲେ ସେ ଦିନ ଥାଉଁ ଥାଉଁ ପହଞ୍ଚିଥା'ନ୍ତା । ଭାଟି, ମଦୁଆ । ମଦୁଆଙ୍କର ତ କେବଳ ମାଂସ ଚିନ୍ତା । ସେ ଚମକି ପଡ଼ିଲା ।

ନାଳ ବନ୍ଧର ସେଇ ଜାଗା । ସଳଖରେ ସେ ଥିରିଥିରି ପାରି ହୋଇଯିବାକୁ ଚାହିଁଥିଲା, ହେଲାନି । ସେ ଶୁଣିଲା, 'କିଏ ?' ଯେତେ ଅନ୍ଧାର ହେଲେ ବି ମଦୁଆମାନଙ୍କୁ ଅଭୀଷ୍ଟ ଦେଖାଯାଏ ।

ଉତ୍ତର ନ ଦେବା ଶ୍ରେୟ ଭାବିଲା । ପାଦ ଚଞ୍ଚଳ କଲା । ସେଇ ଅନ୍ଧାରରେ ଖଳା ବାଡ଼ିପଟୁ ସେ ଶାଶୂଘର ନଡ଼ିଆ ବାରିକୁ ଅନୁମାନ କରିପାରୁଥାଏ । ନା, ଗୋଟାଏ କିଏ ତାକୁ ଅନୁସରଣ କରୁଛି । ଏଣିକି ସେ ଚଞ୍ଚଳ, ଅର୍ଥ, ଦୌଡ଼ିବା ଆରମ୍ଭ କଲା । ତା' ଛନ୍ଦାଛନ୍ଦି ହୋଇ ପଡ଼ିଥିବା ଚିନ୍ତାଗୁଡ଼ାକ ତାକୁ କିଛି ଭାବିବା ପୂର୍ବରୁ ଭୁଲେଇ ଦେଉଥା'ନ୍ତି ବେଶୀ । ଜଣେ ଲୋକ, ଯେତେ ମଦୁଆ ହୋଇଥାଉ ପଛେ ! ଝୁମି ସେଥିପାଇଁ ଡରୁ ନ ଥିଲା । ସେ ଡରୁଥିଲା, କାରଣ ସେ ଶାଶୂଘରର ବୋହୂ । ଗୋଟାଏ ପ୍ରକାର ସମ୍ଭ୍ରାନ୍ତପଣିଆ, ଯଶ ଓ ଲାଳସାର ଲହୁଣି ପ୍ରତିମାଟା ଅକାରଣରେ ଲସରି ଯିବ ସିନା ।

ଦୁଇ ଚାରି ପାହୁଣ୍ଡରେ ଥରେ ଥରେ ତା' ପଞ୍ଜରା ଭିତରଟା ଧଡ଼ଧଡ଼ ହୋଇ ଯାଉଥାଏ । ନାଇଁ, ତଥାପି ଲୋକଟା ଗୋଡ଼େଇଚି । ଘର ପାଖ ହୋଇ ଗଲାଣି, ଏବେ ତାକୁ ତର ସହିଲାନି । ଆଉରି ବୁଲି ଗଲେ ଦାଣ୍ଡ ଦରଜା । ତେଣୁ ସେ ଖଳା ବାଟେ ପଶିଗଲା ।

ଶାଶୂ ଶୋଇଥା'ନ୍ତି । ଝୁମିକୁ ଦେଖି ସେ ଆଶ୍ଚର୍ଯ୍ୟ । ଇଏ ତାଙ୍କୁ ଜାବୋଡ଼ି ଧରି କଇଁ କଇଁ କାନ୍ଦୁଥାଏ । ଶାଶୂ ଆଶ୍ୱାସନା ଦେଉଥା'ନ୍ତି । ''ମା' ଲୋ, ମୁଁ ଭଲ ହୋଇ ଗଲିଣି । ତୁ କାନ୍ଦନା ମୋଟେ । ଜନିଆ (ଜୟନ୍ତ) କୁଆଡ଼େ ଗଲା ?''

ଝୁମିର କାନ୍ଦ ବଢ଼ୁଥାଏ ସିନା, କମୁ ନ ଥାଏ । କଇଁ କଇଁ ଶବ୍ଦ ଛଡ଼ା ସେ କଥା କହିପାରୁ ନ ଥାଏ । ମା' ମନ, ନାନା ଆଶଙ୍କା ଭିତରକୁ ପଶିଗଲା । ନରିଆ,

କେଲୁଣୀ ସେଇ ଘରେ । ସେମାନଙ୍କୁ ଝୁମି ଦେଖୁଥାଏ । ଶାଶୁଙ୍କ ଛଡ଼ା ସେତେବେଳେ ସେ ଆଉ କାହାରିକୁ ଯେମିତି ଚିହ୍ନି ପାରୁ ନ଼ଥାଏ । ନରିଆ ଚାକିରିଆ, କେଲୁଣୀ ତା ଶାଶୂ ଶ୍ୱଶୁରଙ୍କ ଆଶ୍ରିତା । ଦୁଇ ଜଣ ଯାକ ଝୁମିକୁ ନମସ୍କାର କରିଥିଲେ ସୁଦ୍ଧା ସେ ତହିଁକୁ ନିଘା ଦେଇ ନାହିଁ ।

''ମୋ ମା' କିଛି କହୁନି । କ'ଣ ହେଲା ମୁଁ ଜାଣି ପାରୁନି ।'' ଟିକେ ଉଚ୍ଚ ସ୍ୱରରେ ଏତକ କହି ଶାଶୂ ବି କାନ୍ଦିବାକୁ ଲାଗିଲେ ।

''କ'ଣ ହେଇଚି, ମ ?'' ଆତଙ୍କିତ ଶବ୍ଦ । ଶ୍ୱଶୁରଙ୍କ କଣ୍ଠ ସ୍ୱର ଶୁଣି ଝୁମି ଟିକେ ବୁଲି ଦେଖିଦେଲା । ଶ୍ୱଶୁରଙ୍କ ସୌମ୍ୟ ରୂପ ବି ଭୟାତୁର ଦେଖାଯାଉଛି । ସେତେବେଳକୁ ଘର ସାରା ତିନି ଚାରିଟା ଲଣ୍ଠନ ଜଳି ସାରିଲାଣି । ଇଲେକ୍‌ଟ୍ରିକ ନ ଥିଲେ ମଧ୍ୟ ଅନ୍ଧାର ନାହିଁ ।

ଝୁମି ଖଟ ଉପରୁ ଓହ୍ଲାଇ ପଡ଼ିଲା । ଶ୍ୱଶୁରଙ୍କ ପାଦ ଛୁଇଁବା ପ୍ରକ୍ରିୟାରେ ଆଣ୍ଠୁ ପର୍ଯ୍ୟନ୍ତ ଜାବୁଡ଼ି ଧରିଲା । କାନ୍ଦ ବନ୍ଦ ହେଲାନି, କୋହ ବନ୍ଦ ହୋଇଗଲା । ଶ୍ୱଶୁରଙ୍କୁ ଦେଖିବା ପରେ ବୋଧହୁଏ ଅନେକ ଆଶ୍ୱସ୍ତ ଲାଗିଥିଲା ତାକୁ ।

''ମୁଁ ଆସିଲା ବେଳେ ମଦ ଭାଟି ପାଖରୁ ବାହାରି ମଦୁଆଟାଏ ମୋତେ ଗୋଡ଼େଇଲା ।'' ନିଜ ନିଃଶ୍ୱାସ ସମ୍ଭାଳି କଥା କହିବା ଅବସ୍ଥାରେ ସେ ପହଞ୍ଚି ସାରିଥିଲା ସେତେବେଳକୁ । କିନ୍ତୁ କାନ୍ଦୁଥାଏ ।

ଶ୍ୱଶୁର ଝୁମି ମୁଣ୍ଡ ଆଉଁଶୁଥାନ୍ତି ଏବଂ ଶାଶୂଙ୍କୁ ଅନାଇ କହୁଥା'ନ୍ତି । ''ମଦଭାଟି ଯାଇ ନଈକୂଳେ । ବୋହୂ ସେଠିକି କାହିଁକି ଯାଇଥା'ନ୍ତେ ? ଜନିଆ ଟେଲିଗ୍ରାମ୍ କରିଥିଲା । ମୁଁ ସଡ଼କରେ ଠିଆ ହୋଇଥିଲି । ତାଳମୁନି ଗାଦିରେ ଟିକେ ଦଣ୍ଡବତ କରିବାକୁ ଯାଇଥିଲି । ବୋହୂ ସେତିକି ବେଳେ ଆସିଲେ । ମୁଁ ତାଙ୍କ ପଛେ ପଛେ ଆସୁଛି । ସେ ବୋଧେ କୋଉଠି ଚମକି ପଡ଼ିଛନ୍ତି । ସବୁ ତୁମରି ହୁନ୍ଦର । ଭଲ ତ ହୋଇଗଲ । କ'ଣ ନା, ମୁଁ ପୁଅ-ବୋହୂଙ୍କୁ ଦେଖିବି ।''

''ହଁ, ମୁଁ ତ ସବୁଥିରେ ଦୋଷୀ ।'' ଶାଶୁ କହିଲେ ।

''ନରିଆରେ, ଟର୍ଚ୍ଚ ନେଇଯା । ଟିକେ ମାଗୁଣି ବିଶ୍ୱାଳଙ୍କୁ ଡାକି ସାଙ୍ଗରେ ଆଣିବୁ । ସିଏ ଆସି ବୋହୂଙ୍କୁ ଝାଡ଼ିଦେଇ ଯାଆନ୍ତୁ ।''



# ରେପ୍

ମହାକବି କାଳିଦାସଙ୍କ ଚରଣେ ଶରଣ ।

ନୀପଂ ଦୃଷ୍ଟ୍ୱା ହରିତକପିଶଂ କେସରୈରର୍ଦ୍ଧ ରୂଢ଼ୈ -
ରାବିର୍ଭୂତ ପ୍ରଥମମୁକୁଳାଃ କନ୍ଦଳୀଶ୍ଚାନୁକଚ୍ଛମ୍ ।

କୃଷ୍ଣ-ପୀତ କଦମ୍ବ ଫୁଟିଲେ ମେଘ ସିନା ବାଟ ପାଏ, ପ୍ରୀତି ପାଏ ପରାଗ । କାହା ମନ ହସୁ ଥାଏ । କା' ପରାଣେ ବିରାଗ । କାହ୍ନାର ବଇଁଶୀ ବରଂ ହଲିପାରେ ସ୍ୱରର ଦ୍ୱିଧାରେ । ଗୋରୁ କିନ୍ତୁ ଛାଡ଼ିବନି, ଷଣ୍ଢ ଟେକେ ଜାନ୍ତବ କ୍ଷୁଧାରେ ।

ସୁପରଫାଷ୍ଟ ଲଗ୍‌ଜୁରି ବସ୍ । ପ୍ରାୟ ଚାରି ଶହ କିଲୋମିଟର ଯାତ୍ରା । ଆରମ୍ଭ ହୋଇନି । 'ଉଦ୍‌ଘାଟନ'ର ନାଁ ବଦଳାଇ ଆଜିକାଲି ନେତାଏ ତାକୁ ଯେମିତି 'ଜାତି/ ଦେଶ ଉଦ୍ଦେଶ୍ୟରେ ସମର୍ପଣ' ବୋଲି କହି ଦେଉଛନ୍ତି, ତହିଁର ଅର୍ଥ ମୋଟେ ସରଳ ନୁହେଁ; ଦାର୍ଶନିକ । ବାପ ରେ, ଆମେ ଯାହା ମାଲ୍‌ଫାଲ୍ ମାରି ସାରି ପ୍ରୋଜେକ୍ଟିକୁ ଏବେ ଅନିଶ୍ଚିତ 'ତୁ-ତୁମେ-ଆପଣ'ମାନଙ୍କ ହାତରେ ସଅଁପିଦେଲୁ, ତୁଲେଇ ପାରିବ ତ ନାମ-ଫଳକରେ ନାଁ ଦେଖି ଆମର ଜୟଗାନ କର, ଅନ୍ୟଥା ଯଦି ଫୁସୁରି ଯାଏ, ତାହା ଗଣତନ୍ତ୍ରର ତ୍ରୁଟି ବୋଲି ବିଚାରିବ । ଆଗାମୀ ନିର୍ବାଚନରେ ଆମକୁ ଗାଳିଫଜିତ କରିବ ନାହିଁ ।

ବସ୍-ଟ୍ରେନ୍-ଉଡ଼ାଜାହାଜ ଯାତ୍ରା ମଧ୍ୟ ସେହିପରି । 'ଯାତ୍ରା' ନ କହି ତାହାକୁ 'ମହାଯାତ୍ରା ପାଇଁ ଆଉ ଏକ ସୁଯୋଗ' ବୋଲି କୁହାଯାଇପାରେ । ଆପଣଙ୍କୁ ପହଞ୍ଚାଇବାର ଡ଼ବଲ୍ ଗ୍ୟାରେଣ୍ଟି ସହ ଆମେ ବସାଇଦେଲୁ । ଆପଣଙ୍କ ଯାତ୍ରାକାଳୀନ ସୁଖସୁବିଧା ସକାଶେ ଆମେ ପାଉଣା ନେଇଯାଇଛୁ । ଯଦି ଆପଣ ପହଞ୍ଚି ନ ପାରନ୍ତି, ଡାଇରେକ୍ଟ ଇନ୍‌ସୁରାନ୍ସ କମ୍ପାନୀ ଆପଣଙ୍କ ଖବର ବୁଝିବ । ବାଏ-ବାଏ ।

ବସ୍ ଯାତ୍ରାର ବି ରଙ୍ଗ ଥାଏ । ଫାର୍ମାସିଉଟିକାଲ୍ ପିଲ୍ ପରି । ସୁଖ-ଦୁଃଖର କକ୍‌ଟେଲ୍ । ଆଶା-ହତାଶର ବର୍ଣ୍ଣ ବାରୁଆଳୀ । 'ରୂପ୍ ସୁହାନା ଲଗ୍‌ତା ହୈ ଚାନ୍ଦ୍ ପୁରାନା ଲଗତା ହୈ' ପରି ଇମୋସନ୍, ଦ୍ୱନ୍ଦ୍ୱ-ବୈରାଗ୍ୟ କ୍ୟାପସୁଲ, ଉଚ୍ଚାଟ-

ସମ୍ମୋହନର ଅବକାଶ ଆଦି ସବୁ ମିଳିପାରେ ସେଇଠି । ଯେମିତି ଅନନ୍ତ ଅକ୍ଷରେଖାରୁ ଖଣ୍ଡେ ବା ଲମ୍ବା ଗଜରାରୁ ଚାଖଣ୍ଡେ । ଫୁଲ-ପୋକ-କଦଳୀ ବାସୁଙ୍ଗା, ସବୁ ମିଶାଇ ।

ମରଦପଣ ଓ ମର୍ଦାନି ଏକା ପରିକା ଶୁଭୁଥିଲେ ମଧ୍ୟ ଦୁଇଟି ଭିତରେ ଘୋର ପାର୍ଥକ୍ୟ ରହିଛି ବୋଲି ଅଭିଜ୍ଞମାନେ କହନ୍ତି । ଗୋଟିଏ ହେଲା ଶୈଳୀ-ନୃତ୍ୟ । ଆରଟି, ପ୍ରଭୁଦେବା ନାଚ । ଗୋଟିଏ ସଂଯମିତ ଶିକ୍ଷା; ପ୍ରକୃତି ଶିଖାଏ । ଅନ୍ୟଟି ? ଜଣଙ୍କ ବ୍ରିଫ୍ ଓ ଭେଷ୍ଟରେ ବାଇଡଙ୍କ ମାରି, ତାକୁ ସେଗୁଡ଼ିକ ପିନ୍ଧାଇବାର ଘଣ୍ଟାଏ ପୂର୍ବରୁ ପୁରୀ ଭାଙ୍ଗ ଦୁଇ ଗିଲାସ ଏବଂ ରାବିଡ଼ି ଦୁଇ ତିନି ଖୁରି ଖୁଆଇଲେ · ସେ ଯେମିତି ହେବ, ସେଥିରେ ମ୍ୟୁଜିକ୍ ସେଟ୍ କରନ୍ତୁ । ବାଜି ମାରି କହୁଚୁ, ତାହା 'ମୁକାବ୍‌ଲା ମୁକାବ୍‌ଲା ଓ-ଓ-ଓ ଲୈଲା' ପରି ନାଚଠାରୁ ଉତ୍କୃଷ୍ଟ ହେବ । ଚହଟ ସୁନ୍ଦରୀଟିଏ ଆଡ଼କୁ ଆପେ ଆପେ ଆଖି ଟାଣି ହୋଇଯିବା ନିହାତି ମରଦପଣ । ସୁବିଧା ହେଲେ, ମନକୁ ସେଇଠି ରଖି ଆଖି ଫେରାଇ ଆଣିବା ମରଦପଣର ଶୃଙ୍ଖଳା । ମର୍ଦାନି କିନ୍ତୁ ତାହା କରିପାରେନା । ଆଖି ଓ ମନ ସାଙ୍ଗରେ ଦେହଟାକୁ ବି ଓଟାରି ନିଏ । ବେଳେ ବେଳେ ଏମିତି ବି ଦେଖାଯାଏ ସଟଲ୍ ଇଞ୍ଜିନ୍ ବହୁତ ପଛରେ ଥାଇ ଡବାଗୁଡ଼ିକ ଆପେ ଆପେ ଚାଲୁଥିବା ପରି ।

ସୁପରଫାଷ୍ଟ ଲଗ୍‌ଜୁରି ବସ୍‌ରେ ଘଟିଥିବା କଥାଟିଏ । ଝିଅ ବା ବୋହୂ କହି ହେବନି । ଆଜିକାଲି କହିବା ମଧ୍ୟ ସମ୍ଭବ ନୁହେଁ । ଯୁବତୀଟିଏ । ତା' ରୂପ ବର୍ଣ୍ଣିଲେ, ଗପ ହୁଏତ ସେଇଥିରେ ସରିଯାଇପାରେ । କେବଳ ଏତିକି କହିବୁ, ସହରର ଶେଷ ବସ୍ ଷ୍ଟପ୍‌ରେ ସେ ବସ୍ ଉପରକୁ ଉଠିଲାବେଳେ ଓ ତା'ପରେ, ଅନେକ ସହଯାତ୍ରୀ କେବଳ ପିଠି, ଅଣ୍ଟାରେ ବାମାକ୍ରାନ୍ତ ବା ଦକ୍ଷିଣାକ୍ରାନ୍ତ ରକାର ଶିକାର ହୋଇଥିଲେ । ବସ୍‌ଟାରେ ଯେ ଆଉ କେହି ସୁନ୍ଦରୀ ନ ଥିଲେ, ଇମିତି ନୁହେଁ । ପ୍ରଥମେ ପ୍ରଥମେ ସେମାନଙ୍କ ମନ ବି ହଲଚଲ ହୋଇଥିଲା, କିନ୍ତୁ ନିଜର ଦୁଷ୍ଟ ଅନୁଗତଗୁଡ଼ାଙ୍କ ଆଚରଣ ଯୋଗୁ ସେମାନଙ୍କୁ ଅତି ଶୀଘ୍ର କ୍ଷୁବ୍ଧ ହେବାକୁ ପଡ଼ିଲା । ନାରୀ ଜୀବନ । ବଡ଼ ଡର ହେଲା, ପସରା ଯେମିତି ଅଦେଖା ଜାଗାରେ ତଳୁ କଣା ନ ହେଉ । ଯାହାହେଉ, ଅଳ୍ପ ସମୟ ଭିତରେ ପ୍ରାୟ ସମସ୍ତେ ସଜାଡ଼ି ହୋଇଗଲେ । କେତେକ ମରଦପଣଯୋଗୁ ଏବଂ ଆଉ ଥୋକେ ପତ୍ନୀଙ୍କ ବଳବତ୍‌କରଣ ବା ଏନ୍‌ଫୋର୍ସମେଣ୍ଟ ଡରରେ । ଅନେକ, ଭାଗ୍ୟକୁ ନିନ୍ଦି । କାରଣ, ସେମାନଙ୍କୁ ଯୁବତୀଟି ମୋଟେ ଦେଖାଯାଉ ନ ଥାଏ ।

ଯୁବତୀଟିର ଆର ପଟ ସିଧାରେ ଦୁଇ ଜଣ 'ମର୍ଦାନି ଯୁକ୍ତ' ଯୁବକ । ଚାଲୁଥିବା ବସ୍‌ଟିକୁ ସଂଗୋପନରେ ହଲଚଲ କରି ଦେଉଥିଲେ, ବୋଲନ୍ତୁ ।

କଲେଜକୁ ନୂଆ ଅପରୂପାଟିଏ ଆସିଲେ କେତେକ ଛାତ୍ର ତାକୁ ନେଇ ମନେ ମନେ ନିଜ ହୃଦରେ ମେରି ଖୁଣ୍ଟିଟିଏ ଲେଖା ପୋତି ପକାନ୍ତି । ଯେହେତୁ ବେଙ୍ଗଳା ବୁଲିବାର ନଥାଏ, ସେ ଖୁଣ୍ଟ କଦାପି ହଲେ ନାହିଁ । ଧରି ନିଆଯାଉ, ଅନେକଙ୍କର ସେଇ କଳ୍ପନା-କୁମାରୀ ଅନ୍ୟ କୌଣସି ପୁଅ ସହିତ ଭାବଦୋସ୍ତି ଯଦି କରିବାର ସାମାନ୍ୟ ସୂଚନା ମିଳେ, ସବୁ ହୃଦରୁ ସବୁ ଖୁଣ୍ଟଗୁଡ଼ିକ ଆପେ ଆପେ ହୁଗୁଳି ଯାଏ । ସଶବ୍ଦ ସହଯୋଗର ବାତାବରଣରେ ମେରି-ପୁରୁଷଗଣ ଉଦ୍‌ବୁଦ୍ଧ ହୋଇ କାନ୍ଥରେ ଯୁକ୍ତ ଚିହ୍ନ ବା ଅଶ୍ଳୀଳ ଭାବେ ଦୁଇ ଜଣଙ୍କ ନାଁ ଲେଖିବା, ଗୁଜବ ପ୍ରଚାର କରିବା ଏବଂ ଆବଶ୍ୟକ ପଡ଼ିଲେ, ଫୌଜଦାରୀ କରିବାକୁ ବି ପଛାନ୍ତି ନାହିଁ ।

ଯୁବତୀଟିର ପାଖ ସିଟ୍ ଖାଲି ଥିଲା । ଜଣେ ତାକୁ ଅନେଇଲା ବେଳକୁ ଆର ଜଣକ ଅହନ୍ତାରେ ନାଲି ପଡ଼ିଯାଉଥାଏ । ସହର ଛାଡ଼ିବାର ପ୍ରାୟ କୋଡ଼ିଏ କିଲୋମିଟର ଦୂରରେ ଆଉ ଏକ ଛୋଟ ସହର । ସେଇଠୁ ଜଣେ ଯୁବକ ଉଠିଲେ ଏବଂ ସେ ଯୁବତୀଟିର ପାଖ ସିଟ୍‌ରେ ବସିଲେ । ପୁଣି ଥରେ ମେଦିନୀ କମ୍ପିଗଲା ଯେମିତି ! ଯୁବତୀଟିର ଚରିତ୍ର ଖିନ୍‌ଭିନ୍ ହୋଇଗଲା ସମସ୍ତଙ୍କ ନଜରରେ । ଅଲାଜୁକୀ, ମଉନମୁହାଁ, ମହାକାଳଫଳ । ପତ୍ନୀଙ୍କ ପତିମାନେ ଯୁକ୍ତିସମ୍ମତଭାବେ ଏଥିରେ ସହମତ ହେଉଥିଲେ । ନ ହେଲେ କାହିଁକି ଚୋରଙ୍କ ପରି ଅଲଗା ଅଲଗା ଜାଗାରୁ ଚଢ଼ିଥାନ୍ତେ ? ଦେଖୁନା, କେମିତି ଜାକିଜୁକିହେଇ ବସିଛନ୍ତି । ଛି, ଛି, ଲାଜ ମାଡୁନି, ହସାହସି ହେଉଛନ୍ତି ।

ଭାମା ଦେବୀ । ସାଇଜ୍ ପ୍ରାୟ ପଇଁଚାଳିଶ- ପଇଁଚାଳିଶ- ପଇଁଚାଳିଶ । ବୟସ ଚାଳିଶ । ସ୍ୱାମୀ, ଅକ୍ରୁର ଛୋଟରାୟ । ଭାମା ଦେବୀ କହୁଥା'ନ୍ତି, ତୁମେ ଏମିତି ନଖରା ଛକରୁ ଉଠି ସେ ବଦମାସିଆଣୀ ସାଙ୍ଗରେ ପୁରୀ ପଳୋଉ ନଥିଲ କି ? ଥରେ ସିନା ପୁଲିସ୍ ହାତରେ ଧରା ପଡ଼ିଗଲ । କେତେ ଥର ଯାଇଚ, କିଏ ଜାଣେ । ଯୁବକ-ଯୁବତୀଙ୍କ ଠିକ୍ ପଛ ସିଟ୍‌ରେ ଭାମା ଦେବୀ, ଅକ୍ରୁର ବାବୁ ବସିଥିଲେ । ନିଜ ସାଇଜ୍ ସକାଶେ ଭାମା ଦେବୀ ସାଇଡ୍ ସିଟ୍‌ରେ ବସିବାକୁ କେବେ ପସନ୍ଦ କରନ୍ତି ନାହିଁ । ସେ ଜିଦି କରୁଥାନ୍ତି, ସ୍ୱାମୀ କୁହନ୍ତୁ, ଆଗର ଯୁବତୀଟି ଜାଗା ବଦଳାଇ ଭିତର ପଟକୁ ବସୁ । ଭାମା ଦେବୀଙ୍କ ଡାଉଟ୍, ପୁସ୍‌ବ୍ୟାକ୍ ସିଟ୍ ନଇଁ ଆସିବ । ଯୁବତୀଟି ତାଙ୍କ

ସ୍ୱାମୀଙ୍କ ନିକଟତର ହେବ ନିଶ୍ଚୟ । ଇଏ ଯୋଉ ଲୋକ, ତା' କେଶ କି ସ୍କାର୍ଫ ଛୁଇଁଲେ ବି ପଟେଇ ଦେବେ ତାକୁ ! ଅକ୍ରୁର ବାବୁ ଜଣେ ସରକାରୀ ଅଫିସର୍ । ସେ ସ୍ତ୍ରୀଙ୍କ ନାଲାଏକ ପ୍ରସ୍ତାବରେ ରାଜି ହେଲେ ନାଇଁ । ସାଇଡ୍ ସିଟ୍ ଛାଡ଼ି ନିଜେ ଭିତର ପଟକୁ ଚାଲି ଆସିଲେ ।

ନିରବ ଝଡ଼ର ଚିତ୍ତ-ଚାଞ୍ଚଲ ବେଶି । ମର୍ଦାନି ଯୁକ୍ତ ଯୁବକ ଦୁଇ ଜଣ ନାନା କଥାରେ ସିଓର ହୋଇ ପାରୁନଥାନ୍ତି । ମୁଁ ଅର୍ଥରେ, ଆମେ, ସେମାନଙ୍କ ପଛ ସିଟ୍‌ରେ ବସିଥାଉ । ଅର୍ଥାତ୍, ପରିବର୍ତ୍ତିତ ବ୍ୟବସ୍ଥା ପରେ, ଚଲା ରାସ୍ତାର ଗୋଟେ ପଟେ ମାନନୀୟ ଅକ୍ରୁର ଛୋଟରାୟ, ଏପଟେ ଆମେ । ବସ୍ ଚାଲିଥାଏ । ଆମ ଚରିତ୍ର ଅବଶ୍ୟ ଏତେ ଭଲ ନୁହେଁ । ମାତ୍ର ନିରୁପାୟରେ ସାଧୁ ହେବା କୌଶଳ ଆମକୁ ଜଣା ।

ଯୁବକ ଦୁଇଜଣଙ୍କ ଗତିବିଧି । ଦୁଇ ଜଣଯାକ ଅନିଦ୍ରା । ତାଙ୍କୁ ନିରେଖି ନିରେଖି ଆମେ ଅନିଦ୍ରା । ଡ୍ରାଇଭର ନିଶ୍ଚୟ ଅନିଦ୍ରା ରହିଥିବ । ନଚେତ୍ ବସ୍ ପହଞ୍ଚିଲା କେମିତି ? ଆଉ ସମସ୍ତେ ବୋଧହୁଏ ଶୋଇପଡ଼ିଥିଲେ । ଏପରି କି, ବିଡ଼ମ୍ବିତ ଯୁବକ-ଯୁବତୀ ମଧ୍ୟ ନିର୍ବିଘ୍ନରେ । ନିକଟରେ ହଲୁଥିବା ବାୟୁମଣ୍ଡଳକୁ କେୟାର ନ କରି ।

'ହୃଦ ମେରି ଖୁଣ୍ଟ' ଫର୍ମୁଲା ଅନୁଯାୟୀ ଦୁଇ ଯୁବକଙ୍କ ମଧ୍ୟରେ ଥିବା ବୈରଭାବ ତତ୍‌କ୍ଷଣାତ୍ ଅପସରି ଯାଇଥିଲା । ଯୁବତୀଟି ପାଖରେ ଯିଏ ବସିଲା, ସେ କିଏ ? ଜାଗା ପଛେ ଖାଲି ଯାଇଥା'ନ୍ତା, ସିଏ କାହିଁକି ବସିଲା ? ସେମାନେ ମିଳିମିଶି ସିଆଡ଼େ ଅନାଉଥାନ୍ତି । କାଳେ ସେ ଦୁଇଜଣଙ୍କର କିଛି ଅଟପା କଥା ଆଖିରେ ପଡ଼ିଯିବ କି ? ପଡ଼ିଲେ କ'ଣ ସେମାନେ ତାଡ଼ି ପକାଇଥା'ନ୍ତେ, ନିଆରା କଥା । କିନ୍ତୁ କମନ୍-କଜ୍ ଫ୍ରେଣ୍ଡ୍ ଦୁଇ ଜଣ ନିଶ୍ଚିନ୍ତଭାବେ ସର୍ବେକ୍ଷଣ, ପର୍ଯ୍ୟବେକ୍ଷଣ, ଆଲୋଚନା, ଯୋଜନା ଓ ବେଳେବେଳେ କଳ୍ପନା ବି କରି ଚାଲିଥାନ୍ତି ଶଙ୍କାହୀନଭାବେ । ସେମାନଙ୍କୁ କେହି ଅନିଷା କରି ନଥିବେ, ବିଶ୍ୱାସରେ । ସ୍ୱାଭାବିକ୍, ପଛ ପଟେ ଆଖି ଥିଲେ ସିନା ମୋତେ ଦେଖିପାରିଥା'ନ୍ତେ । ଏମିତିକା ଅନିଷା ଜୀବନରେ ଥରେ ସୁଯୋଗ ପାଇ ବି କରି ନ ଥିଲି ।

ବସ୍‌ଟା ସାରାରେ ଏକମାତ୍ର ମୁଁ । ପାପିଷ୍ଠ ଦୁଇଟାଙ୍କର ଇଚ୍ଛା, ଚକ୍ରାନ୍ତ ଓ ପେଞ୍ଚୁଆ ଯୋଜନା ତଥା ସମ୍ଭାବିତ ସଂଶୋଧନ ଖସଡ଼ା ବିଷୟରେ ସବୁ କଥା ଶୁଣୁଥିଲି । ଭାବିଲି, ଯଦି ସୁଯୋଗ ପାଏ, ଯୁବତୀ ପାଖରେ ବସିଥିବା ବାବୁଙ୍କୁ ଟିକେ

ସୂରାକ୍ ଦେଇଦେବି । ସେ ସତର୍କ ରହିବେ । ମୋର ଏପରି 'ଗୁଡ୍ ସାମାରିଟାନ୍' ମନୋବୃତ୍ତି ଅସଲରେ ଯୁବତୀଟିକୁ ଆପନ୍ନ ଭବିଷ୍ୟତରୁ ରକ୍ଷା କରିବା ପାଇଁ ଉଦ୍ଦିଷ୍ଟ ଥିଲା ବା ନିଜ ଭିତରେ ଏକ 'ହୃଦ ମେରି ଖୁଣ୍ଟ' ଛାଁକୁ ଛାଁ ଗଜୁରିଥିଲା, ତାହା କହିବା ସମ୍ଭବ ନୁହେଁ । କାରଣ ଏହି ଗପଟିକୁ ସଂପୂର୍ଣ୍ଣ କରିବାକୁ ହେଲେ, ମୋର ନିରପେକ୍ଷତା ନିହାତି ଆବଶ୍ୟକ ।

ବାବୁ ବୋଧେ ଅତି ଅଳସୁଆ । ବାଟ ସାରା ସେ ମୋଟେ ଓହ୍ଲାଇଲେ ନାହିଁ । ଶାୟିତା ସୁନ୍ଦରୀଙ୍କ ରୂପରେ ମୁଗ୍ଧ ହେବା ଅପେକ୍ଷା, ସମ୍ଭାବିତ ବିପତ୍ତି କଥା ଅନୁମାନ କରି ଦୟା କରୁଥିଲି । ହୁଏତ ଆଉ ଦିନେ ଦୁଇ ଦିନରେ ଖବର କାଗଜରେ ବାହାରିବ । ସମସ୍ତଙ୍କପରି ପଢ଼ିଲାବେଳେ ମୁଁ ଏକା ଭାବୁଥିବି—ଇସ୍, ମୁଁ ଜାଣିଥିଲି ବୋଲି । ବାହାଦୁରିପାଇଁ କାହାରିକୁ କହିପାରୁ ନଥିବି । ଭ୍ରଷ୍ଟର ବୌଦ୍ଧିକତା, କାପୁରୁଷର ଜ୍ଞାନ, ଲମ୍ପଟର ଉପଭୋଗରେ ନା ମହିମା ଥାଏ, ନା ଥାଏ ସତର୍କତା, ନା ଥାଏ ପ୍ରେମ । ମୋ ପାଇଁ ଥିଲା ଏଇ ଅବସାଦ ।

ବଦମାସ୍ ଦି'ଟା ଜାଣନ୍ତି, ଯୁବତୀ ଏବଂ ତାଙ୍କ ସହଚର କଟକରେ ଓହ୍ଲାଇବେ । ଅନୁମାନ ବି ଭୁଲ ନୁହେଁ । କଟକ ପାଇଁ ଉଦ୍ଦିଷ୍ଟ ସିଟ୍‌ରେ ସେମାନେ ବସିଥିଲେ । ଲୋଫର୍ ଦୁଇଟା ଆଗକୁ, ଭୁବନେଶ୍ୱର ଯିବା କଥା । ସେମାନେ ବି କଟକରେ ଓହ୍ଲାଇ ପଡ଼ିବା ଯୋଜନା କରିସାରିଲେଣି । ଲିଙ୍କ୍ ରୋଡ଼ରେ ବସ୍ ସକାଳ ପାଞ୍ଚଟା ପୂର୍ବରୁ ପହଞ୍ଚିଯିବ । ମନେ ମନେ ଠାକୁରଙ୍କୁ ଡାକୁଥିଲି । ସଜାଡ଼ିବାକୁ ଘଣ୍ଟେ ଦୁଇ ଘଣ୍ଟା ଲାଗିବାପରି ବସ୍‌ର କିଛି ଗୋଟେ ଯାନ୍ତ୍ରିକ ତ୍ରୁଟି ହୁଅନ୍ତା କି ! ଅଥଚ, ବସ୍ ଯେମିତି ଚାଲୁଥାଏ ବରଂ ଅଧ ଘଣ୍ଟା ଆଗରୁ ଲିଙ୍କ୍‌ରୋଡ୍‌ରେ ପହଞ୍ଚି ଯାଇପାରେ । ଶୀତ ଦିନ । ଖାଲି ପୁଣ୍ୟକୁ ପାପ ନୁହେଁ, ଆଲୁଅକୁ ଅନ୍ଧାର ବି ଠେଲୁଥାଏ ।

ମନ ଦମ୍ଭିଲା କଲି । ଅନ୍ତତଃ କଣ୍ଡକ୍ଟରକୁ କହିଦେବି । ମନେପଡ଼ିଲା, ବସ୍ ବାହାରିଲାବେଳେ ଏଇ ଦୁଇଟା ଟୋକା କଣ୍ଡକ୍ଟର ସହିତ ମିଶି ସିଗାରେଟ୍ ପିଉଥିଲେ । ହେଁ ହେଁ ଫେଁ ଫେଁ ହେଉଥିଲେ । କିଏ ଜାଣେ, ହୁଏତ କଣ୍ଡକ୍ଟର ବି ସେମାନଙ୍କ ସାଙ୍ଗରେ ମିଶି କଟକରେ ଓହ୍ଲାଇ ପଡ଼ିବ କାଳେ !

ସାହସ କରି କହିଦେବି କି ? ସାଙ୍ଗେ ସାଙ୍ଗେ ଭାବିଲି, ପ୍ରମାଣ ନାହିଁ । ଅନ୍ୟ ପ୍ୟାସେଞ୍ଜରଙ୍କର, ଖାସ୍ ଯୁବତୀଟି ସକାଶେ, ଦୁଇଜଣଙ୍କ ବିରୁଦ୍ଧରେ ପକ୍ଷପାତ

ମନୋଭାବ । ହୁଏତ କେହି ମୁହଁ ଖୋଲି କହିଦେଇପାରନ୍ତି— ଆଃ, ମନେ ମନେ ହିରୋ । ବଦମାସ୍ ଦୁଇଜଣ ଯାହା, ଇରେ ବାବା ! ପିଲାଦିନେ ଚଟକଣି ଅବଶ୍ୟ ଖାଇଥିବି । ଏଯାଏଁ କୌଣସି କିସମ୍‌ର ମାଡ଼ ନ ଖାଇଥିବା ଦେହ ବା ମୁହଁରେ ଯଦି ସେମାନଙ୍କ ଦ୍ୱାରା ଜୁଡ଼ୋ, କାରାଟେ ବା କୁଙ୍ଗ୍‌ଫୁ ପରି ପରାକ୍ରମରୁ ଅଧଲାଏ କି ପହୁଲାଏ ଗଳିପଡ଼େ, ଖାଲି ଲୋକହସା ବା ହଟହଟା ହେବି ତାହା ନୁହେଁ, ଆସନ୍ତା କାଲି ମୋର ସବୁ କାମ ମାରା ହୋଇଯିବ । 'ହତୋ ବା ପ୍ରାପ୍‌ସ୍ୟସି ସ୍ୱର୍ଗଂ ଜିତ୍ୱା ବା ଭୋକ୍ଷସେ ମହୀମ୍' ପର୍ଯ୍ୟାୟର ବୀରପଣ ମୋ ପାଇଁ କୋଉ କାମକୁ ଲାଗିବ ଯେ ? ସାହସିକତା ପାଇଁ କୌଣସି ପୁରସ୍କାର ପାଇବା ଅପେକ୍ଷା ବେଶି ସ୍ପଷ୍ଟ ଓ ସମ୍ଭବ ଲାଗୁଥିଲା ''ବସ୍ ବେ, ବାବୁ ଆସିଲେ ବୁଝିବେ'' ପରି ଅସଭ୍ୟ ନିର୍ଦ୍ଦେଶ ଶୁଣି ଫାଣ୍ଡି ବାରଣ୍ଡାରେ ଅନିଶ୍ଚିତତାକୁ ଅପେକ୍ଷା କରି ବସିବା ଏବଂ ଅକାରଣରେ କନ୍‌ଷ୍ଟେବଲ ଠାରୁ ଏସ୍.ଆଇ. ପର୍ଯ୍ୟନ୍ତ ଲୋକଗୁଡ଼ାଙ୍କୁ ସାର୍ ସାର୍ କହିବା ।

ଏମିତି ଏମିତି ବସ୍ ବିରୂପା ବ୍ୟାରେଜ୍‌ର ଚେକ୍‌ଗେଟ୍‌ରେ ରହିଲା । କେତେକ ପ୍ୟାସେଞ୍ଜର ଓହ୍ଲାଇଲେ । ବଦମାସ୍ ଦି'ଟା ଓହ୍ଲାଇଲେ । ସୁନ୍ଦରୀ ଓ ସହଚର ତଥାପି ଶୋଇଥା'ନ୍ତି । ସେଇଠି ମନେ ମନେ ମୁଁ ବିକଳ୍ପ ସ୍ଥିର କରିନେଲି ।

ସେ ବସ୍ ବାଦାମବାଡ଼ିକୁ ପଶେନି । ଲିଙ୍କରୋଡ୍‌ରେ ପହଞ୍ଚିଲାବେଳକୁ ପାଞ୍ଚଟା ବାଜିବାକୁ ଆଉରି କୋଡ଼ିଏ ମିନିଟ ବାକି । କଟକ କଟକ ଚିତ୍କାର ଶୁଣି ଯୁବତୀଟି ଅନ୍ଧାରକୁ ଅନେଇଲା । ବୁଢ଼ୀ ରାତିର ଆଲୁଅ ଭିତରେ ମହାନଗରର ଗୋରୁ କି କୁକୁର ବି ଦେଖାଯାଉନଥା'ନ୍ତି । ଓହ୍ଲାଇଲେ ମିଷ୍ଟର ମିସେସ୍ ଛୋଟରାୟ, ସୁନ୍ଦରୀ ଓ ତାଙ୍କ ସହଚର, ବଜାରୀ ଦି'ଟା ଏବଂ ମୁଁ ବି ।

ଛୋଟରାୟ ପରିବାର ପାଇଁ କାର୍‌ଟିଏ ଆସିଥିଲା । ଦୂରରେ ଥିଲା । ବସ୍‌କୁ ଦେଖି ଡ୍ରାଇଭର ଆସିଲା । ସୁନ୍ଦରୀ ଜଣକ ମିଷ୍ଟର ଛୋଟରାୟଙ୍କୁ କହିଲେ, ଆମକୁ ଟିକେ ଦୋଳମୁଣ୍ଡେଇ ଅମୁକ ହୋଟେଲରେ ଛାଡ଼ି ଦିଅନ୍ତେ ନି ? ହୁଏତ ଅକ୍ରୁର ବାବୁ ହୁକୁହୁକୁ ହୋଇଥା'ନ୍ତେ, କାରଣ ସେ ସୁନ୍ଦରୀଙ୍କ କଥା ଶୁଣିବାପାଇଁ ଜାକି ହେବାକୁ ଯାଉଥିଲେ । ମିସେସ୍ ଛୋଟରାୟ ଝପଟ ଟକଳୀ ପରି କହିଉଠିଲେ, ''ନାଇଁ ନାଇଁ ଆମେ ଶଙ୍କରପୁର ଯାଉଚୁ ।'' ଏବଂ ଚାଲିଗଲେ ।

ରହିଗଲୁ ପାଞ୍ଚ ଜଣ, ବଜାରୀ ଦୁଇଟାଙ୍କୁ ମିଶାଇ ।

ସେମାନଙ୍କୁ ସୁଯୋଗ ମିଳିଗଲା କଥା ହେବାପାଇଁ । ଆଶ୍ଚର୍ଯ୍ୟ, ଭଦ୍ର ଲୋକଙ୍କ ପରି ପଚାରି ବସିଲେ, ''ଆପଣ କୋଉଠିକି ଯିବେ ? ଟିକେ ରୁହନ୍ତୁ । ଟାକ୍ସିଟେ ଯୋଗାଡ଼ କରିଦେବା । ଆମ ଘର ଏଇଠି ।''

ଜଣେ ଆର ଜଣକୁ ନିର୍ଦ୍ଦେଶ ଦେଲା, ''ରମେଶ, ଟୁନା, ୟାକୁବ୍ କି ଯିଏ ଥିବ ଗୋଟାଏ କାହାକୁ ଡାକିଆଣ ।''

ହ୍ୟାପ୍, ସତେ ଯେମିତି ଫ୍ଲୋରେନ୍ସ ନାଇଟିଙ୍ଗେଲ୍‌ଙ୍କ ବୋପା । ଶ.... ଏଇ ଯୋଜନା ତ କରିଥିଲ ! ମୋତ କେହି ପଚାରୁ ନ ଥା'ନ୍ତି । ବୋକାଟିଏ ପରି ଭାବୁଥିଲି, ମୁଁ ଏଠି ଓହ୍ଲେଇଲି କାହିଁକି ?

ଜଣେ ପ୍ରାୟ ଦୌଡ଼ି ଦୌଡ଼ି ପଳାଇଲା । ଅସୁରଗୁଡ଼ାକ ଠାକୁର ଭେଶ ହେଲେ ବେଶି ଭୋର ଦେଖାଯା'ନ୍ତି । ନିଜ ସମ୍ଭାବିତ ଦୁର୍ଭାଗ୍ୟକୁ ଅନୁଶୀଳନ କରୁଥିଲି । ଖୋଜି ଖୋଜି ମୋତେ ପୁଲିସ୍ ଧରିବ । ଅନ୍ତତଃ ସାକ୍ଷୀ ହେବାପାଇଁ । ବୁକିଙ୍ଗ୍ ରେକର୍ଡ଼ରେ ନାଁ ଅଛି । କଣ୍ଡକ୍ଟର କହିବ, ମୁଁ ଏଇଠି ଓହ୍ଲେଇଛି । ଭୁବନେଶ୍ୱର ଯାଏ ଟିକେଟ୍ କରି ଅପରାଧୀମାନଙ୍କ ସହିତ କଟକରେ ଓହ୍ଲେଇଲି କାହିଁକି, ପୁଲିସ୍ ସନ୍ତୁଷ୍ଟ ହେଲା ପରି ଉତ୍ତର ମୁଁ ଦେଇ ପାରୁ ନ ଥିବି ।

ସହଚର ଜଣକ କହୁଥାନ୍ତି, ଇଏ ମୋ ଭଉଣୀ । ମୁଁ କାଂସବାହାଲରେ ଇଞ୍ଜିନିୟର । ବାପା ବୋଉ ରାଉରକେଲାରେ ରହନ୍ତି । ଆମର ଦୁର୍ଭାଗ୍ୟ, ରାଉରକେଲା ଡାକ୍ତର କହିଛନ୍ତି, ୟାକୁ 'ଏଡ୍‌ସ୍' ଇନ୍‌ଫେକ୍‌ସନ୍ ହୋଇଛି । ପ୍ରାୟ ଛଅ ମାସ ତଳେ ଇଣ୍ଟେଷ୍ଟାଇନ୍ ପେରିଟୋନିଟିସ୍ ବେମାରି ସକାଶେ ହେମୋଗ୍ଲୋବିନ୍ ଡ୍ରପ୍ କରିଥିବାରୁ ତାକୁ ବାହାରୁ ରକ୍ତ ଦେବା ଦରକାର ହୋଇଥିଲା । ଆପଏଣ୍ଟ୍‌ମେଣ୍ଟ୍ ନିଆସରିଛି । ଟିକେ ହେମାଟୋଲୋଜି ପ୍ରଫେସରଙ୍କୁ ଦେଖାଇ ସିଓର ହେବାକୁ ଚାହୁଁଛୁ ।

ପାଞ୍ଚଟା ବାଜି ସାରିଥାଏ । କାର୍‌ଟେ ଆସିଲା । ଏ ଟୋକା ଆଗେ କାର ପାଖକୁ ଦୌଡ଼ିଗଲା । ଭିତରକୁ ପଶିଗଲା । ଦରଜା ବନ୍ଦ କରି ଚମ୍ପଟ୍ ମାରିଲେ ସେମାନେ । ଆମେ ରହିଲୁ ତିନି ଜଣ । ସୁଯୋଗ ମିଳିଲା । ମୁଁ କଥା ଆରମ୍ଭ କଲି ।

ଦୁଇ ଜଣ ଶବ୍ଦ କରି ହସୁଥିଲେ । ବାବୁ କହିଲେ, ''ମୁଁ ଶୋଇବା ବାହାନାରେ ଏ ଲୋଫର ଦୁଇଟାଙ୍କ ଅନେକ କଥା ଶୁଣିଛି । ଗୋଟେ ଅନୁରୋଧ ରଖିବେ ? ଦୁଇ ପରିବାର ରାଜି ନୁହଁନ୍ତି । ଆମେ ଶପଥ କରିଥିଲୁ, ଚଣ୍ଡୀମନ୍ଦିରରେ ବାହା ହେବୁ । ଠିକ୍

ସନ୍ଧ୍ୟା ସାତଟା ବେଳକୁ ସେଠାକୁ ଟିକେ ଆସନ୍ତେ ନି ? ଆମର ଏଠି କେହି ନାହାନ୍ତି । ଏଠୁ ଆପଣ ଯିବେ କୁଆଡ଼େ ?''

''ଭୁବନେଶ୍ୱର ।''

''ତା'ହେଲେ ଏଠି କାଇଁ ଓହ୍ଲେଇଲେ ?''

''ନାଇଁ ନାଇଁ ମୁଁ ନିଶ୍ଚୟ ଆସିବି ।''

ଆଉରି ଫର୍ଚ୍ଚା ହୋଇ ନ ଥିଲା । ପାଖରେ ଚା' ଦୋକାନଟିଏ ଟାଟି ଖୋଲୁଥିଲା । ରିକ୍ସା ଗୋଟେ ଦି'ଟା ରାସ୍ତାକୁ ଆସିଲେଣି । ସେମାନେ ରିକ୍ସାଟିଏ ଚଢ଼ି ପଳାଇଲେ । ଯୁବତୀଟି କହିଲା, ''ଯାଉଚୁ । ଆସିବେ ପ୍ଲିଜ୍ ।''

ଆସିଥିଲି । ମୁଁ ପହଞ୍ଚିଲାବେଳକୁ ସେମାନେ ମନ୍ଦିରରୁ ବାହାରୁଥିଲେ । ଶାଳପତ୍ରର ଭୋଗ ଡାଲା । ବୋହୂଟିର ମଥାରେ ସିନ୍ଦୂର ଦାଉ ଦାଉ କରୁଥିଲା । ମୁଁ ଉପହାର ଦେବାକୁ ରୁପାର ସିନ୍ଦୂର ଫରୁଆଟିଏ ଆଣିଥିଲି । ଠାକୁରାଣୀଙ୍କ ସିନ୍ଦୂରକୁ ପତରରୁ ପୋଛାପୋଛି କରି ଫରୁଆରେ ପୂରାଇ ବାବୁଟି ହାତକୁ ବଢ଼ାଇ ଦେଲି । ''ଯାକୁ ହୁସିଆରରେ ରଖିବା ଦାୟିତ୍ୱ ତୁମର । ସେ ସବୁଦିନେ ନାଇବେ । ସେ ଦାୟିତ୍ୱ ତାଙ୍କର ।''



# ଯଶସ୍ୱୀ

ସେଇ ନାଆଁଟି ଜାଣିବାପାଇଁ ମୋତେ କିଛି ପରିଶ୍ରମ କରିବାକୁ ପଡ଼ିଥିଲା । ଗୀତାଞ୍ଜଳି ସୁପର ଫାଷ୍ଟ୍ ଏକ୍ସପ୍ରେସ୍‌ରେ ହାଓଡ଼ା ଠାରୁ ଚଢ଼ିଲାବେଳଠୁଁ ପ୍ରଥମ ଶ୍ରେଣୀର ଗୋଟିଏ କ୍ୟାବିନ୍‌ରେ ଆମେ ଦୁଇ ଜଣ ସହଯାତ୍ରୀ । ଆଉ ଦୁଇଟି ବର୍ଥ ଫାଙ୍କା ।

ତାଙ୍କ ବିଷୟରେ ବର୍ଣ୍ଣନା କରିବାର ଯଥେଷ୍ଟ ଅଭିପ୍ରାୟ ରହିଛି । ରୁଚିଶୀଳା । ରୂପ ଚୁମ୍ବକୀୟ । ନାନାଦି କାରଣରୁ ବାହୁଡ଼େଇବାକୁ ବାଧ ନହେଲେ ଆଖି ଯୋଡ଼ାକ ତାଙ୍କ ପାଖକୁ ଲଗେଇ କୋଇଠି ଥୋଇଦେଲେ ବି ଚଳନ୍ତା । ବୟସ ଅନୁମାନ କରିବା ମୋଟେ ସମ୍ଭବ ନୁହେଁ । ଏମିତି ଭାବିଲେ ପଚିଶ । ମେକ୍‌ଅପ୍ ବାଦ୍‌ଦେଇ ଭାବିଲେ ପଇଁତିରିଶ ବି ହୋଇପାରେ । ଯୁବତୀମାନଙ୍କପାଇଁ ଶ୍ୟାମଳ ଏକ ପ୍ରକାର ମନ-ମିଠା ରଙ୍ଗ ନୁହେଁ କି ? ଚିତ୍ତଚଞ୍ଚଳ ହେଲେ ମଧୁପ ପରି ମନ-ଝରଣାରୁ ମନ୍ଦାକ୍ରାନ୍ତାର ନାନା ସୁର ମୁକୁଳେଇ ତାହା ହିଁ ଲାଗେ ଗହମୀ ଗହମୀ । ଚିଡ଼ିଗଲେ କାଳୀକୋତରୀ ବୋଲି କୁହାଯାଏନି କି ସାବ୍‌ନୀମାନଙ୍କୁ ?

ସେ ମୋ ଆଖିକୁ ଦେଖାଯାଉଥିଲେ କେବଳ ଶ୍ୟାମଳୀ । କାରଣ ସେଯାଏଁ ତାଙ୍କ ଉପରେ ବିରକ୍ତ ବା ଖୁସି ହେବାପରି କୌଣସି ଅବକାଶ ନଥିଲା । ଅନପେକ୍ଷର ଉଦାସୀନତାରେ କୋଉ ବାହାଦୁରି ଯେ !

ଅଚାନକ କୌଣସି ସୁନ୍ଦରୀଙ୍କ ସାହଚର୍ଯ୍ୟଯୋଗୁ କେତେକ ବାଉଳା ହୋଇଯାଆନ୍ତି । ନିଆରା ଜାଗାରେ ମତଲବ ରଖି ଭଦ୍ର ଘଟାଟୋପ୍ ଘୋଡ଼େଇହୋଇ ବନ୍ଧୁତାପାଇଁ ହାତ ବଢ଼େଇ ଦିଅନ୍ତି, ସତେ ଯେମିତି ସିଏ ସାଟେଲାଇଟ୍ ସିଗ୍‌ନାଲର ଆଣ୍ଟେନା—ବୁକୁ ପ୍ରସାରି ଅନେଇଛି, ଆସ ଆସ କହି ଠାରୁଛି । ଏପରି ଅଭିଳାପଣ ଯୋଗୁ ହୁଏତ କିଏ କୋଉଠି ସଫଳ ହୋଇ ପାରିଥା'ନ୍ତି, ମାତ୍ର ଏମିତିକା ହୁକୁହୁକିଆପଣକୁ ଆମେ ସର୍ବଦା ସାଂଘାତିକ ରିସ୍କ ବୋଲି ଭାବୁ । ଆଉ କେତେକ ଅଛନ୍ତି, ସମାନ ଅବସ୍ଥାରେ ମୁହଁଟାକୁ ପଚା ପାଣିକଖାରୁ ପରି ଓହଳାଇ ପକାନ୍ତି । କତି ଦେଇଯାଉଥିବା ଓଲେଇ ଗାଈ ବି ମୁହଁ ମାରିବନି । ହୁସ୍, ଏମାନେ ଯେମିତି ଅନନ୍ୟ । ନିଜ ଛଡ଼ା ଆଉ କାହାରିକୁ ଚିହ୍ନିବାକୁ କେୟାର କରନ୍ତିନି । ଏମାନଙ୍କ ବଡ଼ି କେମିଷ୍ଟ୍ରି କି

ଅଦ୍ଭୂତ କେଜାଣି । ମଗଜରେ କିଛି ରାସାୟନିକ ପ୍ରତିକ୍ରିୟା ହୁଏନି ବୋଧେ । ବେଳେବେଳେ ଲାଗେ, ଏମିତିକା ଲୋକଗୁଡ଼ାକ ଆଲକାତରା ନ ହୋଇ ମଣିଷ ହେଲେ କାହିଁକି !

ଆମମାନଙ୍କର ଗୋଟିଏ ଦୋଷ ଅଛି । କୌଣସି ଯୁବତୀର ମନଲୋଭା ଦେହ-ଦେଉଳ କେତେ ଆଶାପାଇଁ ପୁରୁଷ ଆଖିକୁ ଆପେ ଆପେ ଓଟାରି ନେଉଥିଲେ ବି ସେଇଗୁଡ଼ିକୁ ଭାଷାରେ ପ୍ରକାଶ କରିବାର ମୁଲାଇଜା ବା ଅସାମର୍ଥ୍ୟଯୋଗୁ ତଣ୍ଟି ଶୁଖିଗଲାବେଳେ ଛେପ ଢୋକିଲା ପରି ଆମେ କହିଦଉ କ'ଣ ନା—ତା' ମୁହଁଟି ସୁନ୍ଦର । ଗୁରୁଙ୍କ ଦର୍ଶନଜ୍ଞାନର ଗାରିମା ବର୍ଣ୍ଣନା କରିବାକୁ ଭାଷା ଯୋଗାଡ଼ କରି ନପାରି ତାଙ୍କ ଦାଢ଼ି ସୁନ୍ଦର କହିବା ପରିକା କଥାଟା ଶୁଭୁନି କି ?

ତରୁଣୀଙ୍କ ମୁହଁଟି ପ୍ରକୃତିରେ ଖୁବ୍ ସୁନ୍ଦର ।

ହାଓଡ଼ା ଛାଡ଼ିଲେ ପରବର୍ତ୍ତୀ ଷ୍ଟପେଜ ଖଡ଼ଗପୁର । କଣ୍ଡକ୍ଟର ପହଞ୍ଚିଲେ । ତାଙ୍କ ପାଖରେ ଚାର୍ଟ । ସେ ଜାଣିଥିଲେ ଦୁର୍ଗ ଆଗରୁ ଆଉ କାହାରି ରିଜର୍ଭେସନ ଆମ ବର୍ଥରେ ନାହିଁ । କମ୍ପ୍ୟୁଟର ସୁବିଧା ଯେତିକି, ଅସୁବିଧା ସେତିକି । ଲୋକଗୁଡ଼ାକ ବି ଜାଣିପକାଉଛନ୍ତି । ନହେଲେ କଣ୍ଡକ୍ଟର ବାବୁ ଟାଟା ବା ରାଉରକେଲାରେ ସର୍ଟ୍ ପାସେଞ୍ଜରଙ୍କୁ କେତେ ଭେଳିକି ଦେଖାଇଥା'ନ୍ତେ । ତାଙ୍କ ଚାର୍ଟ ନିଶ୍ଚୟ କହିଥିବ, ଆମେ ଦୁଇଜଣ ଗୋଟାଏ ବର୍ଥରେ ବହୁ ଘଣ୍ଟାପାଇଁ ରହିଯିବୁ । ଆରେ ବାବା ! କଣ୍ଡକ୍ଟର ହୁଏତ ମନେ ମନେ ଭାବିଥିବେ, ଏତେ ନିରୋଳାରେ ଏମିତିକା ଦୁଇ ଜଣ କେମିତି ଯାତ୍ରା କରିବେ ? ନିରୋଳା ପାଇଥିବେ ବୋଲି ସିନା, ଆଡାମ୍ ଓ ଇଭ୍‌ଙ୍କୁ ନିଷିଦ୍ଧ ଫଳ ଚାଖିବାକୁ ମାତ୍ର କେଇ ସେକେଣ୍ଡ୍ ଲାଗିଥିଲା ।

ବୟସ କାଳରେ ନିଜ ବିଫଳତାକୁ ଏକ ପବିତ୍ର ମାପକାଠି ବୋଲି ବିଚାରି ବୁଢ଼ାମାନେ ଖୁବ୍ ଅନୁମାନ କରିପକାନ୍ତି । ବୟସ୍କ କଣ୍ଡକ୍ଟର ବାବୁ ରେଳବାଇର ଯାତ୍ରା-ସତର୍କତା ପରି ଏକ ବାହାନା ସହ ପଚାରିଲେ, ''ମ୍ୟାଡାମ୍, ଆର ବର୍ଥରେ ଦୁଇଟି କପୁଲ୍ ଅଛନ୍ତି । ଆପଣ ଚାହିଁଲେ ସେଠାକୁ ଯାଇପାରନ୍ତି ବା ସେଠୁ ଜଣେ ଲେଡିଙ୍କୁ ଏଠାକୁ ଆଣି ଏ ସାର୍‌ଙ୍କୁ (ମାନେ, ମୋତେ) ସେଠିକି ପଠାଇ ଦେବି ।''

ହ୍ୟାପ୍, ରେଳ ଚଢ଼ିଲା ପରେ ସାର୍-ମ୍ୟାଡାମ୍‌ଗୁଡ଼ାକ ଲଗେଜ୍ ହୋଇଯାଆନ୍ତି ନା କ'ଣ ?

କଣ୍ଡକ୍ଟରର ବଙ୍ଗଳାରେ ପଚାରୁଥିଲେ । ଯୁବତୀ କିନ୍ତୁ ଇଂରାଜୀରେ ଉତ୍ତର ଦେଲେ । ''କିଛି ଦରକାର ନାହିଁ । ମୁଁ ଆଉ କାହାପାଇଁ ଅସୁବିଧାର କାରଣ ନ ହୁଏ । ଆଇ ଫିଲ୍ କମ୍ଫର୍ଟେବଲ୍ ହିଅର ।'' କଣ୍ଠ ମଧୁର । କଥା କହିବାର ଶୈଳୀ ବି ଚମତ୍କାର ।

ଏହାପରେ ସେ ମୋ ଆଖିକୁ ଗୋରୀ ଗୋରୀ ଦେଖାଗଲେ । ଟପି ଯାଉଥିବା କୌଣସି ଏକ ଛୋଟ ଷ୍ଟେସନର ଗହଳ ଆଲୁଅ ଝରକା କାଚ ବାଟେ ଭିତରକୁ ପଶିଆସୁଥିବା କାରଣରୁ ନ ହୋଇଥାଇପାରେ ନିଶ୍ଚୟ । ମୋ ମନ ହିଁ ତାଙ୍କୁ ଗୋରୀ ଭାବେ ଦେଖିବାକୁ ଚାହୁଁଥିଲା ।

କଣ୍ଡକ୍ଟରଙ୍କ ହାତରେ ରିଜର୍ଭେସନ୍ ଚାର୍ଟ । ତାଙ୍କ ନାଆଁଟି ଦେଖିବାକୁ ଠିଆ ହୋଇ ଉଙ୍କି ମାରିଲି । କଣ୍ଡକ୍ଟର ପଚାରିଲେ, ''ହ୍ୱାଟ୍ ?'' ପଚାରିଲି, ମୋ ବର୍ଥ କୋଉଟା ? ସେ ନିଜ କଲମର ପଛପଟ ଦେଖାଇଦେଲେ ଏଡ଼େ ଏଡ଼େ ଲେଖା ହୋଇଥିବା ନମ୍ବର ଆଡ଼କୁ । ମୋତେ ଟିକେ ଅପ୍ରତିଭ ଲାଗିଲା । ଯୁବତୀ କ'ଣ ଭାବି ନ ଥିବେ ଟି । ଯାହାହେଉ, ମୁଁ ନାଆଁଟିକୁ ଦେଖି ନେଇଥିଲି । କ୍ୟାପିଟାଲ୍ ଏମ୍ ସହିତ ସ୍ମଲ୍ ଏସ୍. ନବନୀତା ଚୌଧୁରୀ । ମାନେ, ଆଜିକାଲି ଯେମିତି କହୁଛନ୍ତି, ସୁଶ୍ରୀ । ଧ୍ୟାତ୍‌ତେରି, କୋଉଠୁ ଏ ନୂଆ ଷ୍ଟାଇଲ୍ ସବୁ ଆଇଲା କେଜାଣି ! ମିସ୍-ମିସେସ୍ କୁମାରୀ-ଶ୍ରୀମତୀ ଯାହା ବୁଝୁଛ ବୁଝ । ଆଉ ଆଉ ଚିହ୍ନ, ମାନେ ଶଙ୍ଖା-ସିନ୍ଦୂରର ଜମାନା ଗଲାଣି । ଏଗୁଡ଼ାକ ଭୁଆଁ ବୁଲେଇବା କଥା । ପିନ୍‌କୋଡ୍ ନ ଲେଖି ଖାଲି ରାମପୁର ବୋଲି ଲେଖିଦେଲେ ଡାକବିଭାଗ କହୁଚି, ସେଇ ନାଆଁରେ କୁଆଡ଼େ ଶହେ ଅଠେଇଶଟା ଡାକଘର ଅଛି । ଚିଠି ପହଞ୍ଚିବନି । ନାଆଁଟା ନେସ୍‌ନାଲ୍‌କୁ ଟାଇଟଲ୍ ପୁଣି ଚୌଧୁରୀ । କାଶ୍ମୀର ଠାରୁ କନ୍ୟାକୁମାରୀଯାଏ ସବୁଠିଁ ଅଛନ୍ତି । କେବଳ ଗୋଟିଏ ସୂଚନା, ହୁଏତ ସେ ବଙ୍ଗାଳୀ ନୁହଁନ୍ତି । କିଏ ଜାଣେ ? ଫୁଟାଣି ମାରି ଇଂଲିସ କୁହାଯାଏ ନା କି ?

ଟିକେଟ୍ ଅନୁଯାୟୀ, ସୁଶ୍ରୀଙ୍କ ଉପର ବର୍ଥଟି ମୋର । ଭାବିଲି, ତଳେ ତ ଗୋଟାଏ ବର୍ଥ ଖାଲି । ସେଇଠାକୁ ଆସିଯିବା ମୋର ଉଚିତ୍ । ଅନୁମତିର ଖାସ୍ କିଛି ପ୍ରୟୋଜନ ନଥିଲା । ତଥାପି ଶିଷ୍ଟପଣ ଦେଖେଇ ହେବାକୁ ପଚାରିଲି—ଏନି ଅବ୍‌ଜେକ୍‌ସନ୍ ?

ଆଶା କରୁଥିଲି, ସେ ମନା କରିବେନି । କିନ୍ତୁ ସେ କହିଲେ, ''ଆଇ ଉଇଲ୍ ବି ଡିଲାଇଟେଡ୍ ।''

ଡିଲାଇଟେଡ୍, ମାନେ ଉଲ୍ଲସିତ ହେବେ ! କିମ୍ବାଇ ? ମନ-ଭଅଁରା ଘିରିଘିରି ଘୂରିଲା । ଅବଚେତନ ଧକ୍କାରେ ବା ସଚେତନ ଭାବେ ଦୁଇ ଜଣ ପ୍ରାପ୍ତବୟସ୍କ, ଏପରିକି, ଯଦି କୌଣସି ଅକାର୍ଯ୍ୟରେ ନିମଗ୍ନ ହେବାକୁ ଚାହାନ୍ତି ସେଥିଯୋଗୁ ନୈତିକତାର ପ୍ରଶ୍ନ ହୁଏତ ଉଠାଯାଇପାରେ, ମାତ୍ର ଦୁଇ ଜଣଙ୍କ ଭିତରୁ କେହି ଅଜ୍ଞତାର ବାହାନା ତ ନେଇପାରିବେ ନାହିଁ । ବିଶ୍ୱାସେ ମିଳନ୍ତି ହରି । ହରି କିଆଁ, ତାଙ୍କ ବୋପା ବି ମିଳନ୍ତି । ଅମାପ ଆଶାବାଦୀ ପ୍ରତ୍ୟୟ ଆମର । ଅଜଣା ଚଉଛକୀ ହାବୁଡ଼ିଲେ, କୁଆଡ଼େ ଆଗେ ଯିବେ, କେତେକ ଏହିପରି ଦ୍ୱନ୍ଦ୍ୱରେ ପଡ଼ିଯାଆନ୍ତି । କିହୋ, ଦରକାର ନ ଥିଲେ ରାସ୍ତାଟିଏ ପଡ଼ିଥା'ନ୍ତା କି ? ଯାହାର ଡାଇରେକ୍ଟ ଇନ୍ଦ୍ରପଦ ଲୋଡ଼ା, ସିଏ ସିଂହାସନର ଠିକଣା ଉଣ୍ଡାଳୁଥାଉ । ବାଟରେ ଯାଉଯାଉ ଆକାଶରେ ଚନ୍ଦ୍ର ହାବୁଡ଼ିଲେ, ମୁଡ୍ କରି, ତତ୍କ୍ଷଣାତ୍ ଚକୋର ହେବାର କ୍ୟାପାସିଟି ଆମର ଅଛି । ଅମରୀ ବୁଦାରେ ପାରିଜାତ ଉଣ୍ଡାଳି ପାରୁ । ସୁଶ୍ରୀ ଏଣିକି ଆଉରି ସୁନ୍ଦରିଆ ଦେଖାଯାଉଥିଲେ ।

ଆଖିରେ ଆଖି ନ ମିଶୁ ପରି ବାହାନା ସହ ଆଠ ବାଇ ସାତ ଫୁଟ କ୍ୟାବିନ୍‌ର ଭିତରଟି, ଝରକା ବାହାରେ ଦେଖାଯାଉଥିବା ପ୍ରକୃତି ଠାରୁ ବେଶି ଅନିଷାଯୋଗ୍ୟ ଲାଗୁଥାଏ । ଆଲ୍‌ବର୍ଟ କ୍ୟାମୁଙ୍କର 'ଦି ଷ୍ଟ୍ରେଞ୍ଜର' ଉପନ୍ୟାସଟି ବାହାର କଲି । ପଢ଼ିବାକୁ ଯେତେ ନୁହେଁ, ବେଶି ଦେଖେଇହେବାକୁ । ଢମ କହି, ଫୁଟାଣି ମାରି ଲୋକେ କ'ଣ ପାଆନ୍ତି କେଜାଣି, କିନ୍ତୁ ସେମିତି କରନ୍ତି ତ ! ସୁଶ୍ରୀ ନବନୀତା ମଧ ଇଂରାଜୀ ଫିଲ୍ମ ମ୍ୟାଗାଜିନ୍‌ଟିଏ ପଢୁଥିଲେ ଆଗରୁ ।

ଏମିତି କେତେକ ଛୋଟଛୋଟ ଘଟଣା ସାମ୍ନାରେ ଆମେ ଉପନୀତ ହୋଇପଡୁ ଯାହା ଜୀବନର ସବୁ ହୁସିଆର ମାପଚୁପ ଗତିକୁ ମଧ ଯ୍ୟାଚ୍ଛାତା ଓଲଟପାଲଟ କରିଦିଏ ।

ସେହିପରି ଅଥୟ ଅବସ୍ଥା ଭିତରେ ବୋଲନ୍ତୁ ଯେମିତି ମୋତେ ଇଦ୍‌ର ଚାନ୍ଦ ଦେଖାଗଲା । ସାଇଡ୍ ଷ୍ଟାଣ୍ଡ୍‌ରେ ସୁଶ୍ରୀଙ୍କର ପଲିଥିନ୍ ପ୍ୟାକେଟ୍‌ଟି ଥୁଆ ହୋଇଥାଏ । ଭିତରୁ ପାଣି ବୋତଲ, କଦଳୀ ଏବଂ ଆଉ କେତାଟି ଜିନିଷ ସହିତ ମୁଁ ଦେଖିପାରୁଥାଏ ମୋ ସଦ୍ୟ ପ୍ରକାଶିତ ଉପନ୍ୟାସ 'ନଈ'ର ଖଣ୍ଡିଏ କପି । ମୋର ଅନୁଭବ କହିବାକୁ ଭାଷା ପାଉନି । ୟୁନିଭରସିଟି ଡିବେଟ୍‌ରେ ବାରମ୍ୱାର ବେଷ୍ଟ ହେଉଥିବା ଝିଅଟି ଦିନେ ବାହା ହୁଏ । ମା' ହେବାକୁ ଯାଉଛି ଜାଣି ସେଇ କଥା ବର୍ଣ୍ଣନା ପାଇଁ ସେ ଶବ୍ଦ ପାଏ କି ? ମାତୃତ୍ୱର ବିଜୟ-ମୁକୁଟ ଉଞ୍ଚା ଦେଖେଇ ହେବାକୁ

ସେ ମୁଣ୍ଡ ଟେକେନି—ତଳକୁ ପୋତିଦିଏ । ଲାଜଲାଜରେ ଅଳ୍ପ ହସି ପକାଇବା ବା ଅଳପ କାନ୍ଦି ପକାଇବା ହୁଏନି କି ତା' ବର୍ଣ୍ଣନାର ବର୍ଣ୍ଣମାଳା ? ବେବି କ୍ରିବ୍ ବାହାରେ ଥାଇ କାନ୍ଥ ଆଢୁଆଳୁ ଅନେକଙ୍କ ଭିତରେ ମା'ଟି ନିଜ କୁନି ଛୁଆର କାନ୍ଦ ଅକ୍ଳେଶରେ ବାରି ପାରୁଥିବା ପରି, ମୋ ନିଜ ବହିକୁ ମୁଁ ବେଶ୍ ଚିହ୍ନି ପାରୁଥିଲି । ମନରୁ ଗୁଡ଼ାଏ ଅଳିଆ ଅପସରି ଯାଉଥିଲା ।

ତା'ହେଲେ, ସୁଶ୍ରୀ ନବନୀତା ଚୌଧୁରୀ ମୋର ଜଣେ ପାଠିକା । ମନକୁ ନାନାପ୍ରକାର ପବିତ୍ର ଭାବ ଗ୍ରାସ କଲା । ଅକାରଣ ଅକାରଣ ଲାଗିଲା, କାହିଁକି ତାଙ୍କ ସହିତ ଇଂରାଜୀରେ କଥା ହୋଇଥିଲି ବୋଲି । ଅନ୍ୟଥା କ'ଣ ବା କରି ପାରିଥା'ନ୍ତି ? ସେ କଲିକତାରୁ ହିଁ ବହିଟି କିଣି ଥାଇପାରନ୍ତି, ଏପରି ସମ୍ଭାବନା ସକାଶେ ପ୍ରକାଶକ ମହାଶୟଙ୍କୁ ମନେମନେ ଧନ୍ୟବାଦ ଜଣାଉଥାଏ । ଯାହାହେଉ, ପ୍ରସାରପାଇଁ ବେଶ୍ ଆୟୋଜନ କରିଛନ୍ତି ।

ସେ ଜାଣନ୍ତୁ, ମୁଁ ମଧ ଜଣେ ଓଡ଼ିଆ । ସେ ପୁନଶ୍ଚ ନିଶ୍ଚୟ ଜାଣନ୍ତୁ, ସେ ସଂଗ୍ରହ କରିଥିବା ଉପନ୍ୟାସର ଲେଖକ ମୁଁ । ଘନିଷ୍ଠ ହେବି ଏବଂ ମର୍ଯ୍ୟାଦାସଂପନ୍ନ ହେବିନି କି ?

ବ୍ରିଫ୍‌କେଶ୍‌ର ନେମ୍‌ଫ୍ଲାପ୍, ନ ଜାଣିଲା ପରି ଢ଼ଙ୍ଗରେ, ତାଙ୍କ ଆଡ଼କୁ ଦୃଶ୍ୟମାନ କରି ରଖିଲି । ଏଥିକୁ ଆଖି ପଡ଼ିଲେ, ଏକା ନାଆଁ ଦେଖି ହୁଏତ ସେ ତାଙ୍କ ଆଡୁ ମୋତେ ପଚାରିବେ । ହେଲାନି । ଏକା ସାଙ୍ଗରେ ସମୟ ଏତେ ବିତି ଯାଇଥାଏ ଯେ ଆଉ ନିଜ ଆଡୁ ପରିଚୟ ଦେଇ ଚିହ୍ନା ହେବା ସମ୍ଭବ ନ ଥିଲା । ବେହିଆମି ହୋଇଥା'ନ୍ତା ।

ସେତେବେଳକୁ ଗୀତାଞ୍ଜଳି ଓଡ଼ିଶା ଅଞ୍ଚଳରେ । ସନ୍ଧ୍ୟା ଓହ୍ଲେଇ ଆସିଲାଣି । ଆଉ ଘଣ୍ଟାଏ ପରେ ରାଉରକେଲାରେ ପହଞ୍ଚିଯିବ । ଲେଖକଟା ବିଚରା ଅନୁରାଗୀ ପାଠିକାଙ୍କ ପାଖରେ ବସିବସି ସୁଦ୍ଧା ଅପରିଚିତ ରହିଯିବ । ଯୁଗଯୁଗ ଧରି ସେମାନେ ଏଇ ଅବସ୍ଥାର ଶିକାର । କେହି ସେମାନଙ୍କୁ ଚିହ୍ନନ୍ତିନି ।

ମୁଁ ନାଗପୁର ଯାଏ ଯିବି । ସେ କେଉଁଠି ଓହ୍ଲାଇବେ, କେଜାଣି ? ଆଗକୁ ବି ଯାଇପାରନ୍ତି । ଆଶା ଥାଉ ।

କିଛି ଉଦ୍ୟମ କରାଯାଉ । ମନ ହେଲା, କଥାବାର୍ତ୍ତା ଓଡ଼ିଆରେ ଆରମ୍ଭ କରିଦେବି । ତଥାପି ମାଡ଼ିମାଡ଼ି ପଡ଼ିଲା । ସେ ଯଦି ଭାବିବସନ୍ତି—ଇଏ କେମିତିକା

ଲୋକଟା କି ? ଓଡ଼ିଶା ମାଟି ଛୁଇଁଲା ପରେ ଓଡ଼ିଆ କହୁଚି । ଗଳି କୁକୁର ନକ୍ସା ମାପଚୁପ କରି ଠିକ୍ ନିଜ ଗଳିରେ ଭୁକିବା ବାହାଦୁରି ପରି ଦୁର୍ନାମ ଓଡ଼ିଆ ଜାତି ସହିତ ଯୋଡ଼ା । ଏଇ କଥା ମନେପଡ଼ିଗଲା । ସାହସ କରି କଥା ଆରମ୍ଭ କରିଦେଲି । ଅବଶ୍ୟ ଇଂରାଜୀରେ । ''ମ୍ୟାଡାମ୍, ଆମେ ବର୍ତ୍ତମାନ ଓଡ଼ିଶା ଭିତରେ ଯାଉଛୁ । ଆପଣଙ୍କର ଓଡ଼ିଶା ସହିତ କିଛି ପରିଚୟ ଅଛି କି ? ସାଂସ୍କୃତିକ ଭାବେ ଖୁବ୍ ସମୃଦ୍ଧ ଏ ଅଞ୍ଚଳ । ଏଠାକାର ଲୋକେ ନିଜ ଗୁଣଗରିମା ସମ୍ପର୍କରେ ବିଶେଷ ପ୍ରଚାର କରିବାକୁ ଚାହାଁନ୍ତି ନାହିଁ ।''

ତଥାପି, ବୋଧହୁଏ ସେ ମୋ ନେମ୍ ପ୍ଲାପ୍ ଦେଖିପାରୁ ନାହାନ୍ତି ଏବଂ ତାଙ୍କ ସଂଗୃହୀତ ଉପନ୍ୟାସର ଲେଖକ ଯେ ମୁଁ ଏ କଥା ସେ ଜାଣିପାରୁ ନାହାନ୍ତି । ମୁଁ ଆରମ୍ଭ କଲାପରେ, ସେ କଥା ହେବାପାଇଁ ଯଥେଷ୍ଟ ଆଗ୍ରହୀ ଜଣା ପଡ଼ିଲେ । ଏତେ ସମୟ ଚୁପ୍‌ଚାପ୍ ବସିଥିବା ଯୋଗୁ ହୁଏତ ଟିକେ ବିଳମ୍ବ ହେଲା । ସେ କହିଲେ, ''ମୁଁ ତ ଏଇ ରାଜ୍ୟର । ଏଇଟା ସୁନ୍ଦରଗଡ଼ ଜିଲ୍ଲା, ଆଗକୁ ସମ୍ବଲପୁର, ତା ଆଗକୁ ବଲାଙ୍ଗିର । ମୋ ଜନ୍ମସ୍ଥାନ ସେଇଠି । ବିହାର ଠାରୁ ଆରମ୍ଭ କରି ଏ ସମଗ୍ର ଅଞ୍ଚଳକୁ ଛୋଟନାଗପୁର ମାଳଭୂମି ଅଞ୍ଚଳ ବୋଲି ଭୌଗୋଳିକ ଭାବେ କୁହାଯାଏ.... । ଇଂରେଜ ସରକାରଙ୍କ ବିରୁଦ୍ଧରେ ପ୍ରଥମ ଆନ୍ଦୋଳନର ସୂତ୍ରପାତ ହୋଇଥିଲା ଏଇ ଅଞ୍ଚଳରୁ.... ।''

ମୋ ପାଦ ତଳୁ ମେଦିନୀ ଖସିବାପାଇଁ ବି ଉପାୟ ନ ଥିଲା । କାରଣ ମୁଁ ଟ୍ରେନ୍‌ରେ ବସିଥିଲି । ଔପନ୍ୟାସିକ ବା ଲେଖକଭାବେ ଚିହ୍ନିବା ତ ଦୂରର କଥା, ମହୋଦୟା ଯେ ମୋତେ ଓଡ଼ିଆ ବୋଲି ଭାବୁ ନାହାନ୍ତି, ତାହା ଜାଣିପାରୁଥାଏ । ମନ କହୁଥାଏ — ବେଟାରେ, ଦେଖେଇହବାକୁ କ୍ୟାମ୍ପୁ ପଢୁଥିଲୁ, ଏବେ ସମ୍ଭାଳ । ପାଖରେ ତ 'ଜହ୍ନମାମୁଁ' ବି ଥିଲା । କାଢ଼ି ପକେଇଦେଇଥା'ନ୍ତୁ । କଅଣ ଅସୁବିଧା ହୋଇଥାଆନ୍ତା ଯେ !

ସିଧା ନିଜ ଭାଷାରେ ପଚାରିଦେଲି, ''ଆପଣ କେଉଁଠାଏ ଯିବେ ?'' ପରସ୍ପର କଥାବାର୍ତ୍ତାରୁ ଉଭୟ ଉଭୟଙ୍କ ଗନ୍ତବ୍ୟ ସ୍ଥଳ ଜାଣିଗଲୁ । ''ଆପଣଙ୍କ ବ୍ରିଫ୍‌କେଶରୁ ନାଆଁ ଠିକଣା ଦେଖି ଆପଣ ଓଡ଼ିଆ ଲୋକ ବୋଲି ଅନୁମାନ କରୁଥିଲି ।'' ତାଙ୍କ ତୁଣ୍ଡରୁ ଏଇ କଥା ଶୁଣି ମୋ ଛାତି ଭିତରେ ଢିଙ୍କି ପାହାର । ତଥାପି ମୋତେ ସେ ଲେଖକର ମେଡାଲ୍ ଦେଉ ନ ଥା'ନ୍ତି । ନାରୀର ମାୟା ଆଉ

ଧୈର୍ଯ୍ୟ, ତାକୁ କିଏ ପାରିବ ? ସୁଶ୍ରୀ ଜାଣି ସାରିଛନ୍ତି ନିଶ୍ଚୟ । ଯେତେବେଳେ କହିବେ, କୁହନ୍ତୁ । ଯେକୌଣସି ପାଠକ-ପାଠିକାଙ୍କପରି ମୋ ଗୌରବ ତ କହିବେ ନା । ନିଜ ଆଡୁ ଦେଖେଇ ହେବି କାହିଁକି ?

'ଧ-ନୀ-ର-ମ-ଦ' । ଇଏ ଆମର ଗୋଟିଏ ଫର୍ମୁଲା । ପ୍ରଥମ ବର୍ଣ୍ଣ ସଂଯୋଜନାରେ, ଧର୍ମ-ନୀତିଶାସ୍ତ୍ର-ରତିବିଦ୍ୟା-ମନସ୍ତତ୍ତ୍ୱ-ଦର୍ଶନ । ଗପସପ ହେବା ପାଇଁ ସ୍ଥାନ-କାଳ-ପାତ୍ର ଦେଖି ଏଇଗୁଡ଼ିକୁ ଆଲୋଚନା ସକାଶେ ପ୍ରୟୋଗ କରାଗଲେ ବୋର୍ ହେବାର ବାଟ ନାହିଁ । ସମସ୍ତେ ସବୁଥିରୁ କିଛି କିଛି ଜାଣନ୍ତି । ଶୁଣିଲା ବେଳକୁ ଅମୃତ ପରି ପିଇଯାଉଥିବେ । ଏସବୁ ପବନ ପରି ବର୍ଣ୍ଣହୀନ, ଅଥଚ ଉତ୍ପାତଶୀଳ । ଗ୍ରାସକରେ, ଗ୍ରହଣ କରେନି । ଶୁଣୁଥିବାବେଳେ ମଧୁର ଲାଗୁଥାଏ, ଶୁଣିସାରିଲେ କିଛି ମନେ ରହେନି ।

ଫର୍ମୁଲା ଅନୁଯାୟୀ, ତେଣୁ ଗପସପ ହେବାପାଇଁ ବିଶେଷ ଅସୁବିଧା ନ ଥିଲା । ସୁଖର କଥା, ମହୋଦୟା ମଧ୍ୟ ତାଳ ଦେଇପାରୁଥିଲେ । କେହି କାହାରି ପ୍ରାଇଭେଟ ଡିଟେଲ୍ସ୍ ଭିତରକୁ ପଶୁ ନ ଥିଲୁ । ସଂଯମକୁ ସେଇ ଓଜନରେ ନ ଶିଖିଥିଲେ, ଲେଖକ ହେବା କ'ଣ ଖେଳଘର ପରି କଥା କି ?

ମୁଁ ଅଥୟ ହେଉଥାଏ । କାରଣ ତାଙ୍କ ଓହ୍ଲେଇବା ଷ୍ଟେସନ ନିକଟତର ହୋଇଆସୁଛି । ଏତେ ବିଦ୍‌ବତ୍ତା ପ୍ରକଟିତ କଲାପରେ ବି ତାଙ୍କ ଶୁଭ-ସନ୍ଦେହ ମୋ ଉପରେ ପଡୁ ନାହିଁ । ଚିହ୍ନା ଶାଢ଼ିକୁ କଣେଇ କଣେଇ ଦେଖିସାରି, ଉତ୍କଣ୍ଠାରେ ପ୍ରୀତି-ପ୍ରତୀକ୍ଷା ଓ ମୁକାବିଲା ପାଇଁ ଅଭିମାନ-ଖସଡ଼ା ମନେମନେ ତିଆରି କରି, ପଛପଟେ ଶାଶୂଙ୍କ କଣ୍ଠସ୍ୱର ଶୁଣିଲେ ପୃଥ୍ୱୀ ଯେମିତି ଓଲଟିଯାଏ, ମୁଁ ପ୍ରାୟ ସେମିତି ଦହଗଞ୍ଜ ହେଉଥିଲି । ଶାଶୂଙ୍କୁ ପଚାରି ହୁଏକି, ତୁମେ କିଆଁ ଝିଅର ଶାଢ଼ିଟା ପିନ୍ଧି ଆକାଶକୁ ଉଡ଼ିଯାଉଥିବା ମୋ ସ୍ୱପ୍ନର ବେଲୁନ୍‌ଟାକୁ ଅକାରଣରେ ଫୁଟେଇଦେଲ ବୋଲି ? ସେମିତି ବା କିପରି ପଚାରିଥା'ନ୍ତି : ଆପଣ ଏତେ କଥାବାର୍ତ୍ତା ହେଲେଣି, ଅଥଚ ପ୍ରିୟ ଲେଖକକୁ ଚିହ୍ନି ପାରୁ ନାହାନ୍ତି କାହିଁକି ?

ଟ୍ରେନ୍ ବେଗ କମାଇଲା । ସୁଶ୍ରୀ ନିଜର ଅଳ୍ପ କେତୋଟି ଜିନିଷ ଠୁଳ କରିଦେଲେ । ଗାଡ଼ି ଅଟକିଲା । ସୌଜନ୍ୟ ଦେଖେଇବାକୁ ତାଙ୍କ ସହିତ କୋଚ୍‌ର ଦୁଆରମୁହଁ ପର୍ଯ୍ୟନ୍ତ ଆସିଲି । ସେଠାରେ ଗୀତାଞ୍ଜଳି ପ୍ରାୟ ଦୁଇ ମିନିଟ୍ ମାତ୍ର ରହେ । ଦାୟିତ୍ୱ ନେଇ ତାଙ୍କ ପଲିଥିନ୍ ବ୍ୟାଗ୍‌ଟି ନିଜ ହାତରେ ଧରିଲି । ପ୍ଲାଟଫର୍ମରେ

ଜାଣିଜାଣି ବହିଟି ଯେମିତି ଗଳିପଡ଼େ, ତାହା ହିଁ କଲି । ସାଉଁଟି ତାଙ୍କ ହାତକୁ ବଢ଼ାଇଦେଲି । ''ଓ, ଆପଣ ତା'ହେଲେ ଓଡ଼ିଆ ଉପନ୍ୟାସ ପଢ଼ିବାକୁ ଖୁବ୍ ଭଲ ପାଆନ୍ତି ?''

ଉଭୟ ଚଞ୍ଚଳ ଥିଲୁ । ସେ ସହରକୁ ଯିବେ । ମୋର ଟ୍ରେନ୍ ଛାଡ଼ିଦେବ । ସେ କହିଲେ, ''ନାଇଁ ମୋର ଜଣେ ସମ୍ପର୍କୀୟ ଷ୍ଟେସନକୁ ଆସିଥିଲେ ମୋତେ ଛାଡ଼ିବାକୁ । ତାଙ୍କୁ ଏ ବହିଟା କିଏ ଜଣେ ପ୍ରେଜେଣ୍ଟ୍ କରିଥିଲା । ମୋତେ ଛାଡ଼ି ସେ ସିଧା ଗୋଟେ ଫଙ୍କ୍ସନକୁ ଗଲେ । ସେ ବହିଟା ନେଲେନି । ଭାବିଲି, ଫୋପାଡ଼ି ଦେବି କାହିଁକି, ନେଇଆସିଲି ।''

ଟ୍ରେନ୍ ଛାଡୁଥିଲା । ବିଦାୟକାଳୀନ ନମସ୍କାର ସହିତ ତାଙ୍କୁ ପଚାରୁଥିଲି, ''ବଲାଙ୍ଗୀରର ଗୁରୁପ୍ରସାଦ ମିଶ୍ରଙ୍କୁ ଜାଣନ୍ତି ?''

''ସିଏ ତ ମୋ ଭିଣେଇ । କଲିକତାରେ ମୁଁ ତାଙ୍କ ଘରେ ଥିଲି । ସେ ମୋତେ ଛାଡ଼ିବାକୁ ଷ୍ଟେସନକୁ ଆସିଥିଲେ ଯେ । ଆପଣ ତାଙ୍କୁ କେମିତି ଚିହ୍ନିଲେ ?''

ସୁନ୍ଦରୀଙ୍କଠାରୁ ଗୀତାଞ୍ଜଳି ମୋତେ ଦୂରକୁ ନେଇଯାଉଥିଲା । ହସି ହସି ହାତ ହଲେଇ କହୁଥିଲି—ଶ- ଉପହାରକୁ ବି କଦର କରି ଜାଣେନି । ହାରାମି କୋଉଠିକାର ।

ତାଙ୍କ ଭିଣେଇ ମୋର ପରିଚିତ । ନବନୀତା ହାତ ହଲେଇ ହସୁଥିଲେ । ଅନ୍ତତଃ ସେ ମୋ ଚଳମାନ ଦୃଷ୍ଟିରୁ ହଜିଯିବା ପର୍ଯ୍ୟନ୍ତ ମୁଁ ତାଙ୍କ ହସ ଦେଖୁଛି । ସେ ମୋ କଥା ଶୁଣିପାରି ନ ଥିବେ । ମୁଁ ତାଙ୍କ ଭିଣେଇର ପ୍ରଶଂସା କରୁଛି ବୋଲି ଭାବିଥିବେ ।



# ତସ୍ମୈ ଶ୍ରୀଗୁରବେ ନମଃ

ଗୁରୁ । ଗୁଣରେ ସେ ଅବ୍ୟକ୍ତ । ଗାରିମାରେ ଗୂଢ଼ । କେତେକ ଅ-ଗୁରୁ ବିଦ୍ୟା ଛାଡ଼ି, ସବୁ ଶିଖାଇବାକୁ ଯୁଗଯୁଗ ଧରି ଗୁରୁ ଥିଲେ ଓ ଆଜି ବି ଅଛନ୍ତି । ନାସ୍ତିକଙ୍କ ମନରେ ଈଶ୍ୱର ନ ଥା'ନ୍ତୁ ପଛେ, ଗୁରୁ ଥା'ନ୍ତି । ଜଳେ-ସ୍ଥଳେ ଅଥବା ଅନଳେ, ପ୍ରାସାଦରେ ଅବା ଚାଳଘରେ, ପଦବ୍ରଜେ-ନିଦ୍ରା-ଜାଗରଣେ, ସେ ଥାଆନ୍ତି ସଭିଙ୍କ ସ୍ମରଣେ । ଏହିପରି ନାନାଦି କାରଣରୁ ଗୁରୁ-ସତ୍ତା ଅବିନାଶୀ ।

ଗୁରୁ ହିଁ ବ୍ରହ୍ମ । ବ୍ରହ୍ମ ଟେଷ୍ଟ୍ କରିବାକୁ ଯେତେ ଉପାୟ ଥାଇପାରେ, ଗୁରୁ ସବୁଥିରେ ଟେଷ୍ଟ-ଯୋଗ୍ୟ । ମୁକ୍ତ ବି ସିଏ, ଗୋପ୍ୟ ବି ସିଏ । ଦାତାପଣରେ ସର୍ବଦାତା, ତଥାପି ଅକ୍ଷୟ । ଅନବରତ ସରିଯାଉଥା'ନ୍ତି, ପୁଣି ଦେଖିଲାବେଳକୁ ସେଇମିତି ରହିଥା'ନ୍ତି । ମାୟା ତାଙ୍କରିଠାରୁ ସୃଷ୍ଟି ହୁଏ, ଅଥଚ ସେ ନିଜେ ମାୟାମୁକ୍ତ । ପଥହଜାଙ୍କ ପାଇଁ ସେ ନେସେନାଲ୍ ହାଇଉଏ, ଫୁଟାଣିଆଙ୍କପାଇଁ ଅର୍ବାନ୍ ଡେଭେଲପମେଣ୍ଟ୍ ବିଭାଗଦ୍ୱାରା ଆପ୍ରୁଭ୍ ହୋଇଥିବା ନକ୍ସାର ରେଖା-ପଥ ପରି । ଗାରରେ ଦେଖାଯାଉଥାଏ; ଆତଯାତ ଅସମ୍ଭବ । ତାଙ୍କୁ ଛୁଇଁ ହୁଏ; ଆବୋରି ହୁଏନି । ଆନମିତ ପ୍ରୀତିପାଇଁ ସେ ପ୍ରେୟସୀ । ଜୀବନର ଅସ୍ତରାଗରେ ସେ ପତ୍ନୀ । ଏକା ସାଙ୍ଗରେ ସିଏ ଲୋକସମ୍ପର୍କ ବିଭାଗର ବିଜ୍ଞାପନ ଏବଂ ସମ୍ବାଦପତ୍ରର ସ୍ୱାଧୀନତା । ଅନ୍ଧକାରରେ ସେ ଆଲୋକ । ଆଲୋକରେ ସେଇ ହିଁ ସୂର୍ଯ୍ୟ । ତାଙ୍କୁ ବୁଡ଼େଇ ହୁଏନା, ସେ ନିଜେ ଇଚ୍ଛାରେ ଲୁଚି ଯାଆନ୍ତି ।

ଗୌରଚନ୍ଦ୍ରିକା ଶୁଣି ମାଷ୍ଟ୍ରମାନେ ଯଦି ନିଜକୁ ଗୁରୁବୋଲି ଭାବୁଥିବେ, ଆମେ ପ୍ରଣାମ କରି କହୁଛୁ, ସେମାନେ ଏପରି ଆଲମ୍ବନରୁ ତଳକୁ ଡେଇଁ ପଡ଼ନ୍ତୁ । ସେପ୍ଟେମ୍ବର ପାଞ୍ଚ ତାରିଖ ଭାଷଣ ସତ୍ତ୍ୱେ ସବୁଦିନେ ସେମାନେ ମାଷ୍ଟ୍ରେ । ଟହକ ପରିପାଟୀ ସହିତ ଛିନ୍ନମୁଣ୍ଡ ଯେମିତି ନାରୀ ନୁହେଁ, ଗୁରୁ ସେମିତି ମାଷ୍ଟ୍ରେ ନୁହଁନ୍ତି । ଗୁରୁ ଯିଏ ସିଏ ଗୁରୁଂ । ବିକଳ୍ପ ରହିତ ।

ଆମର ଗୋଟିଏ ଢ଼ଗ : ଏକ୍ ଜନେ ତୁନ୍‌ତାନ୍/ଦୁଇଜନେ ପାଠ୍/ତିନ୍ ଜନେ ଗାଲିଗୁଲମାଲ୍/ଚାର୍‌ଜନେ ହାଟ୍ । ଗୁରୁ-ଚେଲା କାରବାର ସବୁବେଳେ ଦୁଇଜଣିଆ । କମ୍‌ରେ ଚଳେନି ବା ବେଶିର ଚାହିଦା ନ ଥାଏ ।

ଚୟନିକାର ଚିରନ୍ତନତା ସତ୍ତ୍ୱେ ଗୋଟିଏ ସତର୍କ ବାଣୀ ତଥାପି ଶୁଣିବାକୁ ମିଳେ । ଯୁଗେ ଯୁଗେ ଗୁରୁଙ୍କୁ ଡ୍ୟାସ୍ ମାରିବା, ଅର୍ଥାତ୍ ପଟି ମାରିପାରିବା ପଣର ଚେଲା ବି ଥା'ନ୍ତି ।

ସେମିତି ଏକ ଗୁରୁ-ଚେଲା ଉପାଖ୍ୟାନ ।

ପହଲୱାନ୍ ବ୍ରିଜ୍‌ୱାଲାଙ୍କ ଆଖଡ଼ା । ବ୍ୟାପ୍ତ ଅଞ୍ଚଳରେ ଟେକ ନାଁ । ବହୁ ସଂଖ୍ୟକ ଚେଲା । କୁସ୍ତି କସରତ ଅଭ୍ୟାସ ସର୍ବଦା ଚାଲିଥାଏ । ସବୁ ଅନୁଷ୍ଠାନ ପରି ସେ ଆଖଡ଼ାରେ ବି କେତେକ ନିୟମ ଥାଏ । ଆଖଡ଼ା ଘରକୁ ଓସ୍ତାଦ୍ ଖୁବ୍ କମ୍ ଆସନ୍ତି । ସ୍ତର ସ୍ତରର ଶିଷ୍ୟ, ଉପଶିଷ୍ୟ, ପଞ୍ଚଶିଷ୍ୟ ଚେଲାମାନେ କାମ ଚଳାଇଥା'ନ୍ତି । ଚେଲାମୟ ହେଲେ ଜଗତ କେମିତି ଲାଗେ, ସେତିକି ଥିଲା ବ୍ରିଜ୍‌ୱାଲାଙ୍କ ସନ୍ତୋଷ । ଜଣେ ସନ୍ତୁଷ୍ଟ ଗୁରୁଙ୍କ କଲ୍ୟାଣ, ଚେଲାମାନଙ୍କ ଲାଗି କେତେ ଉପକାରୀ ସେକଥା ପ୍ରତ୍ୟେକ ଚେଲା ଠଉରେଇ ପାରୁଥିଲେ ।

ବ୍ୟାପ୍ତ ଅଥଚ ନିବଦ୍ଧ ସଂସାରକୁ ଦେଖି ହେଜିବା ବା ନଦେଖି ଅନୁଭବ କରିବାପରି ଜ୍ଞାନ ସବୁ ମିଳେ ଗୁରୁଙ୍କଠାରୁ । ଅନେକ ମହତ ଲୋକ ଅଛନ୍ତି, ଯେଉଁମାନଙ୍କ ତମାମ ଜୀବନ ବିତିଯାଇଥିଲେ ସୁଦ୍ଧା ସେମାନେ ନିଜକୁ ଗୁରୁ ବୋଲି କେବେ ଦାବି କରନ୍ତି ନାହିଁ । ଏହାକୁ ମାନସିକ ବିଶୃଙ୍ଖଳା ବା ସ୍ୱାର୍ଥପର ବିନୟୀଭାବ ବୋଲି କୁହାଯାଇପାରେ । ହଇହୋ ବାବୁ, ଜ୍ଞାନକୁ ଯଦି କଳାଧନ ପରି କେବଳ ନିଜ ଜାଣତାରେ ଲୁଚାଇବାର ଥିଲା, ହାସଲ କଲାବେଳେ କାହିଁକି ଭାବିଲନି ଯେ ଯଦି ତୁମ ପୂର୍ବରୁ ସମସ୍ତେ ସେମିତି କରିଦେଇଥା'ନ୍ତେ, ତା'ହେଲେ ତାହା ତୁମେ ପାଇଥା'ନ୍ତ କୋଉଠୁ !

କିନ୍ତୁ, କଥା କ'ଣ କି ? ନିଜ ଗୌରବ ଯଦି ଆଢୁଆଳରେ ରହେ, ମଣିଷର ମାନସିକ ସଂଘାତ ଦୁଇ ପ୍ରକାର ଦେଖାଯାଏ । ଗୌରବ ଯଦି ପ୍ରକାଶିତ ହୁଏ, ଦୁଃଖ ବି ଦୁଇପ୍ରକାର । ଆଢୁଆଳରେ ରହିଲେ, ମଣିଷ ଭିତରେ ଥିବା 'ମୁଁ' ଟି ଅଦର୍ଶନରେ ପ୍ରେମ ଝାଉଁଳି ପଡୁଥିବା ପରି ଧୀରେ ଧୀରେ ମରିଯାଏ । ଜୀବନରେ ଯଦି ଗୌରବ ନାହିଁ ତା'ହେଲେ କେଉଁ ମହାର୍ଘ ପସରା ଛାଡ଼ି ସେ ଏଇ ସଂସାରରୁ ଯିବ ଯେ ! ବିତ୍ତ-ବୈଭବ ? ସତ୍ତ୍ୱାଧିକାରୀଙ୍କ ବାଟେ ଆଇନ ସଙ୍ଗତ ଉପାୟରେ ସବୁ ପାର ହୋଇଯିବ । ପ୍ରକାଶର ଦୁଇ ଦୁଃଖ : କିଳାମାନେ ବିନା ନୋଟିସ୍‌ରେ ଆସନ୍ତି ଏବଂ ମଣିଷ ମନରେ 'ହାମ୍‌ବଡ଼ା' ଭାବ ଯାଦୁ, କୁଣ୍ଡିଆ ପରି ବିସ୍ତରିଯାଏ ।

ବ୍ରିଜ୍‌ୱାଲ୍‌ଙ୍କ ଚାରି ଜଣ ଏକନମ୍ବରୀ ଚେଲାଙ୍କ ଭିତରୁ ପରେଶ ପହଲୱାନ୍ ଅନେକ ଦିନୁଁ ଏମିତି ନାନାଦି କଥା ଖାଲି ଚିନ୍ତୁଛି । ଅନେକ ରାତି ହତାଶିଆ ପରି ଆଁ କରି ଅନେଇ ଅନେଇ କଟିଯାଉଛି । ଆଖିକୁ ନିଦ ଆସୁ ନାହିଁ ।

ପରେଶ ପହଲୱାନ୍ ମୋଟେ ଅସଫଳ ନୁହେଁ । ଏମିତି ଭାବିଲେ, ସେ ଗୁରୁଜୀଙ୍କର ସବୁଠାରୁ ପ୍ରିୟ । ସେ ଏକ ମାତ୍ର ଚେଲା ଯିଏ ଶହେ କୁସ୍ତି ଲଢ଼ି ସାରିଛି ଅଥଚ ଗୋଟିଏ ବି ହାରି ନାହିଁ । ଗୁରୁ ତା' ନାଁରେ ବଇରଖ ଥାପିବା କଥା ମଧ୍ୟ ମନ ଖୋଲି କାହାକୁ କାହାକୁ କହିସାରିଲେଣି । ତା'ହେଲେ, ଭିଡ଼ଯୋଗୁ ସିନେମା ଟିକେଟ୍ ନ ପାଇଲେ ଦାର୍ଶନିକ ଅବସାଦରେ ଘାରିହେବା ରୋମିଓମାନଙ୍କ ପରି, ତା' ମନରେ ଉପୁଜୁଥିବା ଗ୍ଲାନିର କାରଣ କ'ଣ ହୋଇପାରେ ?

ପହିଲେ ନ ଥିଲା । ପରେ ପରେ ତାହା ତାକୁ ବେଶି ଆକ୍ରାନ୍ତ କଲା । ସେ ଅନୁଭବ କରେ, କୁସ୍ତିର ଏମିତି କିଛି ଖଞ୍ଜ କୌଶଳ ସେ ଜାଣେ, ଯାହା ଗୁରୁ ତାକୁ ଶିଖାଇ ନଥିଲେ । ସମ୍ପତ୍ତିରୁ ପୁଳାଏ ଦେଇଦେଲେ ମଣିଷର ପ୍ରଜ୍ଞା ଆହତ ହୁଏ ନାହିଁ । ମାତ୍ର ନିଜେ ହାସଲ କରୁଥିବା ଗୌରବରେ କେହି ଭାଗୀଦାର ଜୁଟିଲେ ହିଂସାରେ ମନ ଜଳିଯାଏ । ପ୍ରୀତିରେ ଆନର ଅନୁପ୍ରବେଶକୁ ସହାବସ୍ଥାନ କହି ଉଦାରଭାବେ ସହ୍ୟ କରିପାରୁଥିବା ନର-ନାରୀ ବରଂ ଈଶ୍ୱର ହୋଇପାରନ୍ତି, ମଣିଷ ହୋଇପାରିବେ ନାହିଁ । ପୁଣ୍ୟର ନଈ ଅତଡ଼ା ଉପରେ ମଜବୁତ୍‌ଭାବେ ଠିଆ ହୋଇଥିବା ପାଞ୍ଚ ମନ ପଚିଶ ପ୍ରକୃତିର ମଣିଷ ସେତିକିବେଳେ ତଳେ ବହୁଥିବା ପାତକର ଧାରାସୁଅରେ ଦାନ୍ତ କଡ଼ମଡ଼ କରି ଡେଇଁପଡ଼େ ।

ବହୁତ ବହୁତ ଜିତିଲା ପରେ ପରେଶ ପହଲୱାନ୍‌କୁ ହୀନମନ୍ୟତା ଘାରିବାର କାରଣ ହେଲା, ପ୍ରତି ଥର ସେ ଶୁଣିବାକୁ ପାଉଥାଏ, କିଏ ଜିତିଲା ? —ନା, ବ୍ରିଜ୍‌ୱାଲା-ଚେଲା । ବେଳେବେଳେ ତା' ନାଁ କେହି ଧରନ୍ତି ନାହିଁ । ତା' ପରାକ୍ରମର ନାଁଟି ମାଟି ବୋଳ ଭିତରେ ମରକତ ପରି ଜ୍ୟୋତି ବିକିରଣ ନ କରି କ'ଣ ହଜିଯିବ ? ଅନେକଥର ଗୋପନରେ ମନାସି ସାରିଲାଣି, ଗୁରୁ ହେଲେ ମରିଯାଆନ୍ତେ କି ! ଅନ୍ତତଃ ପଙ୍ଗୁ ହୋଇଯାଆନ୍ତେ କି ! କଳ୍ପନା ବାଟେ ପ୍ରାପ୍ତିର ନିକଟବର୍ତ୍ତୀ ଇଲାକାରେ ଉପନୀତ ହୋଇ ଅପ୍ରାପ୍ତିଯୋଗୁ ଯେତେ ପ୍ରକାର ଦହଗଞ୍ଜ ଥାଇପାରେ, ପରେଶ ପହଲୱାନ୍ ସବୁ ଭୋଗୁଛି । ସମୁଦାୟ ମଣିଷଟାକୁ ମୋଟୁରୁ ଦେଖା ନ ଯାଉଥିବା ମନ ପରିକା ଶୂନ୍ୟ-ସଭାଟି କେଡ଼େ ନାରଖାର ନ କରେ ଟି ! ହ୍ୟାପ୍... ଏ ଗୁରୁ ମରିବନି କି ମୁଁ ଓସ୍ତାଦ୍ ହୋଇପାରିବିନି ।

''ଯୋଜନାନାଂ ସହସ୍ରଂ ତୁ ଶନୈର୍ଗଚ୍ଛେତ୍ ପିପୀଲିକା/ଅଗଚ୍ଛନ୍ ବୈନତେୟୋଽପି ପଦମେକଂ ନଗଚ୍ଛତି'' । ଯାହାହେଉ ପଛେ, ବଡ଼ ପୁରୁଷ ସବୁ କହିଯାଇଛନ୍ତି ନା । ଗରୁଡ଼ ଯେଡ଼େ ସ୍ପିଡ୍‌ରେ ଉଡ଼ିବାକୁ ସକ୍ଷମ ହୋଇଥାଉ ନା କାହିଁକି, ସିଏ ଯଦି ଖାଲି ନିଜ କ୍ଷମତା ସକାଶେ ଫୁଟାଣିମାରି ବସି ରହେ, ଚାଲୁଥିବା ପିମ୍ପୁଡ଼ି ଠାରୁ ସେ ଆଗକୁ ଯାଇପାରିବ ବା କେମିତି ? ମୋତେ କିଛି ଉଦ୍ୟମ କରିବାକୁ ହିଁ ହେବ । ପରେଶ ପହଲୱାନ୍‌ର ଯେଉଁ ମାନସିକ ଅବସ୍ଥା, ସେଥିରେ ସେ ନାନା କଥା ଚିନ୍ତା କଲା । କେତେକଥା ଯୋଡୁଥାଏ, କେତେ କଥା ଫେଡୁଥାଏ । ଭାବିଲା, ଗୁରୁଙ୍କୁ ସେ ନିଜେ ମାରିଦେବ । ବାସ୍, ଏଇ ଆଇଡ଼ିଆ ଫାଇନାଲ୍ ହୋଇଗଲା ।

କିନ୍ତୁ ଦୁଇଟି କାରଣ ପାଇଁ ଡର ବି ମାଡୁଥାଏ । ଗୁରୁଦ୍ରୋହୀ, ସିଧା ନର୍କକୁ ପଳାଇବ । ମନ ତାକୁ ବୁଝେଇଦେଲା : ଯା' ବେ, ମଲାପର କଥା ଏତେ କାହିଁ ଭାବୁଛୁ ? ଦଣ୍ଡ ପାଇଲେ ପୁଣି ମଣିଷ ହୋଇ ଜନ୍ମ ହେବୁ; ପୁଣି ପହଲୱାନ୍ ହେବୁ । ମାତ୍ର କାମଟା ସାରିଦେଲେ ଜୀବନ କାଳରେ ହିଁ ଗୁରୁ ତ ହୋଇ ପାରିବୁ ନା । ମନର ଯୁକ୍ତିଟି ତାକୁ ଟାଣୁଆ ଲାଗିଲା । ଯେଉଁ ଦ୍ୱିତୀୟ କାରଣଟିକୁ ସେ ଡରୁଥିଲା, ତାହାଥିଲା, ବ୍ରିଜ୍‌ୱାଲ୍ ଏକ ମାତ୍ର ଜ୍ଞାତ ମଲ୍ଲ, ଯାହା ସହିତ ସେ ଆଦୌ ଲଢ଼ି ନାହିଁ । ଭୟ ସହିତ ହାବୁଡ଼ିବା ଠାରୁ ଭୟର ଆଶଙ୍କା ମଣିଷକୁ ବେଶି ହୁରୁଡ଼ାଏ । ଯାହା ବି ହେଉ, ଗୁରୁ ମରନ୍ତୁ, ଏଇ ବିଚାର ସହିତ ସେ କୌଣସି ପ୍ରକାର ସାଲିସ୍ କରିବ ନାହିଁ ।

ସେଥିପାଇଁ ସେ ଉପାୟ ଫାନ୍ଦିଲା । ଗୁରୁଙ୍କର ଦୈନନ୍ଦିନ ସମସ୍ତ କାର୍ଯ୍ୟସୂଚୀ ସେ ଜାଣିଥାଏ । ସମ୍ମୁଖରେ ଭେଟିବା ଡର ନଥିବ ଅଥଚ ତା' କାର୍ଯ୍ୟସିଦ୍ଧି ହୋଇ ପାରିବ । ତାହାହେଲା, ଗୁରୁ ସକାଳେ ଯେତେବେଳେ ପ୍ରାତଃକାର୍ଯ୍ୟପାଇଁ 'ଦୁଇ' ଯାଆନ୍ତି । ଆଖଡ଼ାରେ ଥିବା ଗୋଟିଏ ଚଉକସ ମୂଳିଆ କଣ୍ଟାବାଇଁଶୀ ଠେଙ୍ଗାକୁ ସେ ଅନବରତ ନଜରରେ ରଖିଥାଏ ।

କାଲି ପ୍ରତ୍ୟୁଷରେ ସବୁ କାମ ସାରିଦେବ । ପହଲୱାନ୍‌ରୁ ଓସ୍ତାଦ୍ ହେଲେ, ତାକୁ ଘେରି ରହିଥିବା ସମଗ୍ର ପୃଥିବୀଟା ଆପେ ଆପେ କେମିତି ବଦଳିଯିବ, ବିକ୍ଷିପ୍ତ ହେଉ ପଛେ, ସେଥିରୁ ପୁଳାଏ କଳ୍ପନା ସେ କରିପକାଉଥାଏ । ସାରା ରାତି ଚଙ୍ଗ୍ ଚଙ୍ଗ୍ । ଆଖିପତା ପଲଟୁନି । ଦୁର୍ଯୋଗକୁ ପାହାନ୍ତିଆ ପହରକୁ ଘୁମେଇ ପଡ଼ିଛି ସିଏ । ପ୍ଲାନ୍ ମିସ୍ ହୋଇଥିବାରୁ ଉଠି ଚମକିପଡ଼ିଲା । ପ୍ରେମିକା 'ସୃଷ୍ଟି' କରିବା ଲୋଭରେ

କୌଣସି ଚିହ୍ନା ଝିଅର ବହି ଭିତରେ ତା' ଅଜାଣତରେ ଗୁଞ୍ଜି ଦେଇଥିବା ଆଦ୍ୟ ଯୌବନର ସର୍ବପ୍ରଥମ ପ୍ରେମ ପତ୍ରଟି, ବହି ବଦଳ ହୋଇଥିବା କାରଣଯୋଗୁ ନିଜ ଭଉଣୀର ଟେବୁଲ ଉପରେ ଆବିଷ୍କାର କଲେ, ମାଟ୍ରିକ୍ ପଢୁଥିବା ବୟସର ବାଳକଟି ଯେମିତି ଛନ୍‌କି ଯାଏ, ପରେଶ ପହଲଓ୍ବାନ୍‌ର ଅବସ୍ଥା ତା'ଠାରୁ କୋଉବାଟେ ଭଲ ନ ଥିଲା ।

ସେତିକିବେଳେ ସେ ଶୁଣିଲା, ଗୁରୁଜୀଙ୍କ ହାକୁଡ଼ି । ସେଇ ହାକୁଡ଼ିକୁ ବି ସେ ଚିହ୍ନେ । ବାସି ପାଣି ପିଇ ମଇଦାନ ଯିବା ପୂର୍ବରୁ ସେ ଏମିତିକା ହାକୁଡ଼ିଟାଏ ମାରନ୍ତି । ସେପର୍ଯ୍ୟନ୍ତ ଧକ ଧକ ହେଉଥିବା ତା' ଛାତି ପୁଣି ଧୀରଲଳିତ ହୋଇ କଳଗାଉଣା ବଜାଇବାକୁ ଲାଗିଲା । ଗୁରୁଙ୍କପାଇଁ ଶେଷ ନମସ୍କାର କଲା । ଭାବିଲା, ଯାହାକୁ କାଳ ଜଗିଥାଏ, ସିଏ ବଞ୍ଚିବ କୋଉବାଟେ !

ଶଙ୍କାହୀନ ବ୍ରିଜ୍‌ଓ୍ବାଲ୍ ପାଣି ଢାଳେ ଧରି ପେଟ ବାଡ଼େଇ କିଆ ଗୋହିରି ଆଡ଼େ ଚାଲିଥାନ୍ତି । ଅତି ସନ୍ତର୍ପଣରେ ସେ ତାଙ୍କୁ ଅନୁସରଣ କରୁଥାଏ । ଗୁରୁ କାନରେ ପଇତା ଗୁଡ଼େଇ ନିତ୍ୟକର୍ମପାଇଁ ବସିପଡ଼ିଲେ । ଥରକରେ ଯେମିତି ସବୁ କାମ ଶେଷ ହେବ, ସେହିପରି ଯୋଖ କରି ଠେଙ୍ଗା ଉଞ୍ଚେଇ ଗୁରୁଙ୍କ ତାଳୁକୁ ଲକ୍ଷ୍ୟକରି ନିସ୍ତୁକ ପାହାରଟେ କଷିଦେବା ବେଳକୁ ପରେଶ ପହଲ୍‌ଓ୍ବାନ୍ ମୁହଁରେ ବଜ୍ର ଆଘାତ ପରି ଢାଏକରି କଅଣ ଗୋଟାଏ ବାଜିଗଲା । ହାତରୁ ଖସି ଠେଙ୍ଗା ତିନି ଚାରି ଘେରା ପବନରେ ବୁଲି ପଛକୁ ପଡ଼ିଲା । ପହଲଓ୍ବାନ୍ କଣ୍ଟାବୁଦା ଉପରେ ଲମ୍ବକାତ୍ । ଆସାଷ୍ଟମ ।

ଗୁରୁଙ୍କ ନିତ୍ୟକର୍ମ ନାରଖାର ହୋଇଗଲା । ସେ ଘୂରି ଦେଖିଲେ, ତାଙ୍କ ପ୍ରିୟ ଚେଲାର ନାକଦଣ୍ଡା, ମୁଣ୍ଡ-ମୁହଁ ଫାଟି ରକ୍ତ ଝରଝର ବହିଯାଉଥାଏ । ଦେହ ସାରା ବାଗବାଇସ ନଥାଏ । ଗୁରୁ କିଛି ବୁଝିପାରୁ ନଥା'ନ୍ତି । ସେ ତାକୁ ଉଠାଇ ସାଷ୍ଟମ କଲେ ।

ଚେତା ପାଇ ଚେଲା ଦେଖିଲା, ପାଖରେ ଗୁରୁଜୀ । ଶାନ୍ତ-ସୌମ୍ୟ-କଲ୍ୟାଣମନ୍ତ ରୂପ । ତା'ପରି ଗୁରୁ-ଦ୍ରୋହୀଟାର ଶୁଶ୍ରୁଷାରେ ସେ ବ୍ୟସ୍ତ । ଚେଲା ନିଜ ଲୁହ-କୋହ ସମ୍ଭାଳି ପାରିଲାନି । ମନର ସବୁ ପାପ, ସବୁ ତଦ୍‌ଜନିତ କର୍ମ କୁନ୍ଥେଇ କୁନ୍ଥେଇ କହିଦେଲା । ଗୁରୁଙ୍କ ପାଦ ଯୋଡ଼ିକ୍ ଧରି ସେ ଭେମାରଡ଼ି ପକାଇ କାନ୍ଦୁଥାଏ କେବଳ !

ଅବିଚଳିତ ଭାବେ ଗୁରୁ କହୁଥା'ନ୍ତି, ବ୍ୟସ୍ତ ହଅନା, ବିକଳ ହଅନା । ଭୁଲ ନ କଲେ ଚେଲାଟିଏ ବିଦ୍ୟା ଶିଖିବ କେମିତି ?

''ମୁଁ ନର୍କ ଛଡ଼ା ଜାଗା ପାଇବିନି, ଓସ୍ତାଦ୍ । ହେଲେ, ଆପଣ ଜାଣିଲେ କେମିତି ?''

''ଆରେ ବାପ, ମୁଁ ପରା ତୋ' ଗୁରୁ । ହେଉ, ତଥାପି କହିଦଉଚି, ଏଇ ଗୋଟିଏ ବିଦ୍ୟା ଶୁଣି ମୋଟେ ଭାବିବୁନି ରେ ଗେଡ଼ ତୁ ସବୁ ଶିଖିଗଲୁ ବୋଲି । ଭବସାଗର ଯେମିତି ଗୋଲ, ଗୁରୁଙ୍କ ଜ୍ଞାନ ସେମିତି ଗୋଲାକାର ।''

ପରେଶ ପହଲୱାନ୍ ଯେମିତି ଠିଆ ଠିଆ ବ୍ରହ୍ମ-ସନ୍ଧାନ ପାଉଥିଲା ।

ଗୁରୁ ଟ୍ରିକ୍ ବି କହିଦେଲେ । ମଳ ନିଃଷ୍କରଣ କାଳରେ ସୂର୍ଯ୍ୟଙ୍କୁ ମୁଖ କରି ବସିବା ନିଷେଧ । ତେଣୁ ସେ ପଶ୍ଚିମକୁ ମୁହଁକରି ବସିଥିଲେ । ସୂର୍ଯ୍ୟାଲୋକ ଥିଲା ତାଙ୍କ ପଛରେ । ଜଣଙ୍କ ଦୀର୍ଘ ଛାଇ ତାଙ୍କ ଉପରେ ପଡ଼ିଲା । ସେଇ ଛାଇରେ ଛାଇରେ ଠେଙ୍ଗାଟାଏ ଉପରକୁ ଉଠୁଥିବା ସେ ଦେଖିଲେ । କଳନା କରିନେଲେ । ପ୍ରତିରକ୍ଷାପାଇଁ ତାଙ୍କ ପାଖରେ କ'ଣ ଥିଲା ବା ? ତେଣୁ ସେ ଛାଇକୁ ଲକ୍ଷ୍ୟ କରି ଓଲଟା ବାଟେ ଢାଳଟା ଫୋପାଡ଼ି ଦେଲେ । ''ଅର୍ଜୁନ କେମିତି ଦ୍ରୁପଦ ରାଜସଭାରେ କୁଣ୍ଡ ପାଣିରେ ଛାଇକୁ ଅନେଇ ଉପର ଚକ୍ରରେ ଘୂରୁଥିବା ମୀନର ନୟନକୁ ଭେଦ କଲା, ଶୁଣିନୁ କିରେ ? ଇଏ ବି ଗୋଟିଏ ବିଦ୍ୟା । ଏମିତି ଅମାପ, ଅସରନ୍ତି, ଆଉରି କେତେ କାହିଁରେ ଅଛି । ବାପରେ, ମନ ସ୍ଥିର କର । ଆଖଡ଼ାକୁ ବାହୁଡ଼ି ଯା ।''

ଉପାଖ୍ୟାନର ମଞ୍ଜି କଥା : ଗୁରୁ କଦାପି ହାରନ୍ତି ନାହିଁ । କାହିଁକି କେଜାଣି, ଚେଲାମାନେ ସେଇଠି ଟିକେ ହାତ ମାରିବାକୁ ହମ ହମ ହଉଥା'ନ୍ତି, ଖୁରି ଖାଉଥାନ୍ତି ।



# ଅପଯଶ

କେତେକ ଦାଗ ଆଦୌ ଲିଭେ ନାହିଁ । ଗୌରବ ଗୋଟାଏ ବଜ୍ଜାତ ଚଢ଼େଇ । ଅଜଣା ରୂପ-ଗନ୍ଧ-ବର୍ଣ୍ଣ ମିଶା ମଣିଷ ମନ ପାଇଁ ଅଭାବୀ ଅଭିଧାନମାନ ତିଆରି କରୁଥାଏ । ତିଆରି କରୁଥାଏ ଅବଚେତନ ସଂସ୍କାରର ଗନ୍ତାଘର । ସେଥିରେ ଯେତେଯାହା ଭର୍ତ୍ତି କଲେ ବି ତାହା ପୂରେନି । ପାଖରେ ଉଡ଼ି ଉଡ଼ି ଚଢ଼େଇଟା କିନ୍ତୁ ଗୌରବର ଗୀତ ଗାଉଥାଏ । ତାକୁ କେହି ଅନାନ୍ତୁ ବା ନଅନାନ୍ତୁ, ସେ ଯେତେବେଳେ ଉଡ଼ିଯାଏ ସାରା ଉଆସଟା ମଲା ମଶାଣି ପରି ନିର୍ଜନ ହୋଇପଡ଼େ ।

କୂଳ-ମର୍ଯ୍ୟାଦା ଯୋଗୁ ଘଟଣାଟି ଗୁରୁତର ଥିଲା । ରାୟବଂଶର ଅତୀତ ସହିତ ଯୋଡ଼ାହୋଇଥିବା ଅନେକ କଥାଠାରୁ ଇଏ ନିଆରା । ତ୍ରିଭଙ୍ଗୀଠାଣି ବିନା କୃଷ୍ଣ ଯଦି ଖୁମ୍ବଟେ ପରି ସଳଖ ଠିଆ ହୁଅନ୍ତେ, ତାହା କାହାରି ଆଖିକୁ ରୁଚନ୍ତା କି ? ସେମିତି, ଗୌରବ ଗୋଟେ ଚାରେଣି ନୁହେଁ ଯେ ସମସ୍ତଙ୍କପାଇଁ ତାର ମୂଲ୍ୟ ପଚିଶ ପଇସା ହୋଇପାରିବ । ଦିନ ଥିଲା, ପରଘରର କେତେ ଝିଅ-ବୋହୂଙ୍କ ପାଣିକାଚ କଚେରୀ ଘର ପଛପରସ୍ତ ପଲଙ୍କ ଉପରେ ଟୁଂ ଟୁଂ ହୋଇ ତୁଟି ଯାଉଥିଲା । ଜହ୍ନ ଆଲୁଅରେ ବରଫ ବି ତରଳି ଯାଉଥିଲା । କାହାପାଇଁ ତନୁ ତ ଆଉ କାହାପାଇଁ ଦେହ, ସେଥିରୁ ଝାମ୍ପ-ଚିହ୍ନ ଓ ଜୁକୁଜୁକିଆ-ରକ୍ତ ବୁନ୍ଦାଗୁଡ଼ାକ ନିଜେ ନିଜେ ହଜି ଯାଉଥିଲେ । ମେଘୁଆ ଆକାଶର ସୂର୍ଯ୍ୟ ପରି ସତ ରହିଥିଲା; ଦେଖାଯାଉ ନ ଥିଲା । ଫୁଲର ପାଖୁଡ଼ାକୁ ପଥରରେ ଛେଚିବା ଥିଲା ସେଦିନର ଗୌରବ । ବାଈର ପାଦ ପାଉଁଜକୁ କରପତ୍ରରେ ଆଉଁଶି ଆଉଁଶି ନିଜେ ଭୂଇଁରେ ଲୋଟି ତାକୁ ଛାତିରେ ଜାକିଧରି ଲାଳମିଶା ଉଚ୍ଛୃଙ୍ଖଳ ଲେହନ-ଚୁମ୍ବନରେ ଓଦା କରିଦେବା ଥିଲା ଏକପ୍ରକାର ମହନୀୟତା । ରିରିଂସୁ ଘ୍ରାଣପାଇଁ ବେଶ୍ୟାର ପଦଯୁଗଳରୁ ସିକ୍ତ ରକ୍ତରଙ୍ଗର ଅଳକ ଚିହ୍ନ ଯଦି ମୁହଁ ବା ଦେହରେ ଲାଗିପାରୁଥିଲା, ତାହା ଥିଲା ପୌରୁଷ; ତାହା ହିଁ ଥିଲା ସ୍ୱାଭିମାନ ।

ଦେବୀବଲ୍ଲଭ ଏମିତିକା ଅନେକ ରୋମାଞ୍ଚିତ କାହାଣୀ ଶୁଣିଛନ୍ତି । ହଜିଯାଇଥିବା ଆହ୍ଲାଦର ସେଇ ମଳୟକୁ ବରଂ ସେ ଗୋପନରେ ଖୋଜିଥିବେ ସିନା, କଦାପି ତ ବିଚଳିତ ହୋଇ ନ ଥିଲେ ।

ଜୀବନକୁ ସେ ବିଶେଷ ଗୁରୁତ୍ୱ ଦିଅନ୍ତି ନାହିଁ, ଯେଉଁଥିରେ ମହତ ନ ଥାଏ । ମହତ କ'ଣ ? ନିଜ ସଂସ୍କାର ବାଟେ ଯେମିତି ସେ ଭାବିଶିଖିଛନ୍ତି ।

ଘଟଣାଟି ଶୁଣିବାପୂର୍ବରୁ ତାଙ୍କ ଉପରେ ରାଧାଚଡ଼କ ପଡ଼ି ଥାଆନ୍ତା ହେଲେ ।

ଦେବୀ ବଲ୍ଲଭଙ୍କ ସାନଝିଅ ରିଲୁ । ବୟସ ଏକୋଇଶ । ଆତ୍ମହତ୍ୟା କଲା । ଇସ୍, ଛଳନାର କି ଅଦ୍ଭୁତ ମେଦ-ରକ୍ତ ମୂର୍ତ୍ତିଟାଏ ନୁହେଁଟି ସିଏ । କିଛି ଜଣାପଡ଼ି ନ ଥିଲା । ଯଦି ସେ ଏକୁଟିଆ ମରିଥା'ନ୍ତା, ଖାଲି ବାପା କାହିଁକି, ଭାଇ-ଭଉଣୀ ଓ ପରିବାରର ଯେତେ ଯିଏ ଯେଉଁଠି ଅଛନ୍ତି, ସମସ୍ତେ ବରଂ ସେଇ କଥାଟିକୁ କୁଣ୍ଠିତଭାବେ ସହି ଯାଇଥା'ନ୍ତେ । ଖୁବ୍ ବଡ଼ ସାଧନା ନୁହେଁ, ବାହାନା ପାଇଁ ଅଳ୍ପ ଟିକେ ନିର୍ଲଜ୍ଜତା ଲୋଡ଼ା । କାରଣ ଅନ୍ୟ କାହା ଦୁଃଖକୁ ସରଜମିନ୍ ତଦନ୍ତର ପ୍ରୟାସ ଜଗତ କରେନାହିଁ ।

ରିଲୁର ଅଧାଲଙ୍ଗଳା ଶବ ଭାସୁଥିଲା ରାୟ ଘର ବାରିପଟ ଯୋରରେ । ଆଉ ପଚାଶ ହାତ ଛାଡ଼ି ବଟ ପ୍ରଧାନ ପୁଅ ଅକୁର ଶବ ବି । କୌଣସି ସୂଚନା ବାଟେ କେହି ହେଲେ କଥାଟିକୁ ମିଶାଇ ପାରୁ ନ ଥିଲେ । ସତ କାହା ଅକଲକୁ ଅପେକ୍ଷା କରେ ନାହିଁ ଦୁଇଟି ଶବ । ଗୋଟିଏ ଝିଅ, ଆଉ ଗୋଟିଏ ପୁଅ । ଦୁଇ ଜଣଙ୍କ ବୟସ ବିଚାର୍ କଲେ ସହଜ ଅନୁମାନରେ ଯେତିକି ଆସିପାରେ, ବାସ୍ ସେତିକି ।

ସୁନ୍ଦରୀ ଚିହ୍ନିବା ସକାଶେ ରୂପକୁ ଯେତେ ଯେତେ ବର୍ଣ୍ଣନା କଲେ ବି ରିଲୁ ତା'ଠାରୁ ଥିଲା ସୁନ୍ଦରୀ । ଶୀତ ସକାଳେ ଫୁଲ ପାଖୁଡ଼ାରେ ଶିଶିର ବିନ୍ଦୁ ଆପେ ଯୋଡ଼ିହୋଇ ରହୁଥିବାପରି ତା' ରୂପ ସାତବର୍ଣ୍ଣର ଆମୋଦ ସୃଷ୍ଟି କରିପାରୁଥିଲା । ଛୁଆ ଦିନଠାରୁ ସହରରେ ବଢ଼ିଥିଲା ସିଏ । ପାଠ ପଢ଼ିଥିଲା ସେଇଠି । ତଥାପି ତା' ନାଁରେ ଥରଟିଏ ବି କୌଣସି ଗୁଜବ ଉଠି ନ ଥିଲା । ସେ ସ୍କୁଲଠାରୁ କଲେଜ ପର୍ଯ୍ୟନ୍ତ ଯିବାଆସିବା ରାସ୍ତାରେ ଟୋକାଗୁଡାକ ହାଇଁପାଇଁ ହେଉଥିବାର ବାରମ୍ବାର ଦେଖିଛି । କେତେବେଳେ ବିରକ୍ତ ଲାଗେ, କେତେବେଳେ ଆମୋଦିତ ହେଉଥାଏ । କ୍ଷମତାପାଇଁ ପ୍ରଶଂସକଙ୍କ ସଂଖ୍ୟା ବଢ଼ିବା ଯେମିତି ସୁଖପ୍ରଦ, ସରସ ସୁନ୍ଦରୀ ଝିଅଟିଏ ସେମିତି ତା'ପାଇଁ ଲୋଭିଲା ଆଖିର ସଂଖ୍ୟା ବୃଦ୍ଧିକୁ ମନେ ମନେ ଖୋଜୁଥାଏ ।

ନାରୀମନ ପୁରୁଷର ଆଖି ଏବଂ ଆଚରଣରୁ ସବୁ ବାହାନାକୁ ଫେଡ଼ି ଦେଇପାରେ । ସେଥିରୁ କାମନାର ଯେତେ ଉଲଗ୍ନ ରୂପ ଦେଖୁଥାଏ, ସେତେ ସେ ଆମୋଦିତ ହେଉଥାଏ । ଏପରି ଆମୋଦିତ ହେବା ଅବସ୍ଥା କେବଳ ମାନସିକ ସ୍ତରରେ । ସହଯୋଗ କରିବା ଭାରି କଷ୍ଟ ।

ରିଲୁ ଇଚ୍ଛା କରିଥିଲେ ସୁନା ମିରିଗ ପଲଗୁଡ଼ାଙ୍କୁ ଜାଲରେ ପକାଇ ପାରିଥା'ନ୍ତା ।

ଅଜୁ ? ବିଜୁଳି ପାଖରେ ଜୁଳୁଜୁଳିଆ । କେଜାଣି, ରତି-କନ୍ଦର୍ପଙ୍କ ଗତି, କ'ଣ କିଏ କହିବ !

ସେ ସପ୍ତମ ଶ୍ରେଣୀରେ ପଢ଼ିଲାବେଳର କଥାଟିଏ । ମା' କହିଥିଲେ, ''ତା' ଫ୍ରକ୍ ପାଇଁ କନା ନିଅଣ୍ଟ ହେଉଚି । ଏଣିକି ଆଉ ଗଜଟାଏ ଲେଖା ଅଧିକ ଆଣିବ । ଡିଜାଇନ୍ ଅଲଗା ରକମ ନ କଲେ ବା ଫ୍ରିଲ୍ ବଡ଼ ନ ହେଲେ ସେ ପିନ୍ଧିପାରୁନି ।''

''ତୁମକୁ ଭଲ ସିଲେଇ କରିଆସୁନି ବୋଲି ତ କହିଦବ । ଏମିତି ଲୁଚେଇ ଲୁଚେଇ କାହିଁକି କହୁଚ ? ଯଦି ନପାରୁଚ ଦରଜିକୁ ଦେଇ ଦଉନା । ଦାମିକା କନା ଆଣିବି, ତୁମେ ବରବାଦ କରି କାଟି ପକାଉଥିବ । କାଇଁ ରିଲୁ ତ ଏତେ ବଡ଼ ହୋଇନି ।''

''ତୁମେ ବଳଦଟିଏ । ବୁଝି ପାରିବନି । ଯାହା କହିଲି, ସେଇଆ କରିବ ।''

ମା' ବୁଝାଇପାରନ୍ତି ନାହିଁ । ବାପା ଦେଖି ପାରନ୍ତି ନାହିଁ ।

କୋଡ଼ିଏ-ଏକୋଇଶ ବର୍ଷ ବେଳକୁ ଝିଅମାନଙ୍କ ବଢ଼ିବା ପ୍ରାୟ ସରି ଯାଇଥାଏ । ଚତୁର୍ଦ୍ଦଶୀର ପୂରନ୍ତା ଶରଦ-ଚନ୍ଦ୍ର ପରି । ଆଉ ରାତିକୁ କ୍ଷୟ ଛୁଇଁ ପୂନେଇଁ ହୁଏନି । ଏଇଠି ଟିକେ ବେଶି କାଳ ଅଟକିଯାଏ । ପୂରିଲା ପୂରିଲା ଭରାନଈ । ଅଝାଳ ଟାଣି ପୋତ ବାହିଲେ ବି ନାଉରିଆ ମୋଟେ ହଲେନି । ଆକାଶର ସବୁ ଚଳନ୍ତି ବଉଦ ଗୁଡ଼ାକ ବି ତା' ଛାତିକୁ ଅନେଇ ଅନେଇ ପଳାନ୍ତି । ଉପରକୁ ଚାହିଁ ନଈକୁ ଅନାଇଦେଲେ ବଉଦ ଗୁଡ଼ାକ କେତେ ଡାଆଣା, ଜଣାପଡ଼ିଯା'ନ୍ତି । କୋଳ ଜୁଆରିଆ । ସେଥିରେ ବି ଜହ୍ନର ନିଟୋଳ ପ୍ରତିମା । ମନ ଭିତରେ ଲଳିତ ପ୍ରିୟତମାର ମୁହଁଟି ପରି । ଜାଣିହୁଏ, ଛୁଇଁ ହୁଏନା । ବୁଝିହୁଏ ଅଥଚ ଆଉ କାହାକୁ ବୁଝେଇ ହୁଏନା । ଆଞ୍ଜୁଳାଏ ପାଣି ତୋଳି ଆଣିଲେ ବି ସେଥିରେ ଜହ୍ନ ଚାଲିଆସେ । କାମାସକ୍ତା ବିବିକ୍ତ ନାରୀଟିଏ ଅଥବା ପୁରୁଷଟିଏ ଯେମିତି । ବିନା ମାଧ୍ୟମରେ ମନ ଗତି କଲା ପରି । ଜହ୍ନ ପୁଣି ଆଙ୍ଗୁଳି ଫାଙ୍କ ବାଟେ ଲୁଚି ଲୁଚି ଖସି ଚାଲିଯାଏ ନଈ ଭିତରକୁ ।

ଏତେ ସୁନ୍ଦର ନଈଟିଏ । ଅସମ୍ଭାଳ ହେଲେ କିଛି ଉଚ୍ଛୁଳେଇ ଦେଇଥା'ନ୍ତା ଭଲା । ତଥାପି ତ ଭରା ଦେଖାଯାଉଥାଆନ୍ତା ନା । ଇସ୍, ସମ୍ପୂର୍ଣ୍ଣ ଲୀନ ହୋଇଗଲା ଯେ ।

ପ୍ରାୟ ମଣିଷମାନଙ୍କ ଭାବନା ଦୁଇ ପରସ୍ତ । ସାମ୍ନାସାମ୍ନି ଥୁଆ ହୋଇଥିବା ଏକା ସାଇଜ୍‌ର ଦୁଇଟି ଅଇନା ପରି । ପ୍ରତ୍ୟେକ ଅପରଟିର ଅସରନ୍ତି ପ୍ରତିବିମ୍ବ ବହନ କରନ୍ତି । ମାତ୍ର, କେଉଁ ଗୋଟିକ ଉଦାର ହୋଇ କାହିଁକି ଆଗେ ଆରଟିକୁ ବୁକୁର ଗହୀର ଦେଖେଇଦେଲା, ତାହା ଜାଣିବା ଯେମିତି କଷ୍ଟ, ଭାବନା ଠଉରେଇବା ପ୍ରାୟ ସେମିତିକା ଅବୋଧ । ରିଲୁପାଇଁ ଯେତେ ଯିଏ ଛି ଛି କହିଥାଆନ୍ତୁ ପଛେ, କେତେକ ଯେ ମନେ ମନେ କଳ୍ପନାର ରତି-କାବ୍ୟ ରଚି ନ ଥିବେ, ଏକଥା କୁହାଯାଇ ନ ପାରେ ।

: ମୁଁ ଅଜୁପରି ଯୋର ପାଣିରେ ଭାସୁଥା'ନ୍ତି ଭଲା ! ସେଇଟାର କ'ଣ ଥିଲା ଯେ ?

ରିଲୁ ସହିତ ଅଜୁର ତୁଳନା ଅପ୍ରାସଙ୍ଗିକ । ଅଜୁ ପାଠ ପଢ଼ିନଥିଲା । ଗରିବ ନାଗର, ହ୍ୟାପ । ନିର୍ଲଜ୍ଜଟାଏ । ବାଜେ ପିଲା । ତା ନାଁରେ ଅନେକ ଦୁର୍ନାମ ମଧ୍ୟ । ସେ ଠାକୁରଙ୍କ ରେକାବି ଚୋରି କରି ଧଡ଼ିଆ ଅଟାରିକୁ ବିକି ଦେଇଥିଲା । ସେଥିରେ ରେବ ଲାଗି ବାସ୍ନା ପାଉଡର ଆଣି ତାକୁ ଦେଲାବେଳେ ଧରାପଡ଼ିଗଲା । ଠାକୁରଙ୍କ ମହିମା । ରେବ ପରେ ପରେ ଧରା ପଡ଼ିଗଲା ପାପଗର୍ଭଯୋଗୁ । ଅଟାରି ଅବଶ୍ୟ ରେକାବିଟା ଫେରାଇଦେଲା । ଦୋଭେଇରେ ଯିବା ପର୍ଯ୍ୟନ୍ତ ରେବର ଗୋରା ମୁହଁରୁ କଳଙ୍କର କଳା ଛାଡ଼ି ନ ଥିଲା ।

ହଁ, ଦେବୀବଲ୍ଲଭଙ୍କ କଟକ କୋଠାକୁ ଅଜୁ ବେଳେବେଳେ ଯାଏ । ତତ୍ତ୍ୱାବଧାରକ ଭାଗଚାଷୀର ପୁଅ ଭାବେ । ରିଲୁ ତାକୁ ଯେତିକି ଚିହ୍ନିଥିବ, ସେମିତି କେତେ ରିକ୍ସାବାଲାଙ୍କୁ ମଧ୍ୟ ଚିହ୍ନି ନ ଥିବ କି ?

କିନ୍ତୁ, ଅନୁମାନ କରିବା ବ୍ୟାପାରରେ ମନୁଷ୍ୟର କ୍ଷମତା ଅପାର । ସେଇ ବାଟେ ସେ ଈଶ୍ୱରଙ୍କୁ ସୃଷ୍ଟି କରିପାରିଛି । ସବୁ ସମ୍ଭାବିତ ଭ୍ରଷ୍ଟାଚାର ଦୂରକୁ ଠେଲି ସେ ସେଇ ଅନୁମାନବାଟେ ସୀତାଙ୍କୁ ସତୀ କରିଦେଇଛି । ମରଣପରି ଚୂଡ଼ାନ୍ତ ସତ୍ୟକୁ ସାବିତ୍ରୀ ଚିତା କାଟିଛନ୍ତି ସେଇ ସତ୍ୟ-ପାଳନ ଦ୍ୱାରା । ସେ ଅନୁମାନ କରି ଯେମିତି ଇଚ୍ଛା କରେ, ତାହା ହିଁ ହୁଏ ସତ୍ୟ । ସୀତା-ନ୍ୟାୟକୁ ଓଲଟାଇ, ବହୁ ସମ୍ଭୋଗ କରିଥିବା କୁନ୍ତୀଙ୍କୁ ବି ପ୍ରାତଃ-ସ୍ମରଣୀୟା କରିପାରିଛି । ରିଲୁ କେଶ୍‌ଟା ତ ସହଜେ ଜଳଜଳ ହୋଇ ପଦାରେ ପଡ଼ିଛି ।

ନାରୀ ମନରେ କୁଆଡ଼େ ଅଦ୍‌ଭୁତ ଇଚ୍ଛା । ପୁରୁଷମାନଙ୍କୁ ବିକଳ ଭାବେ ସେ ଏକାକୀ ମନରେ ଦେଖିବାକୁ ଖୋଜୁଥାଏ । ଜଗତପାଇଁ କିଏ ପାପୀ ବା କିଏ

ପରାକ୍ରମୀ, ତା'ର ସେଥିରେ କିଛି ଯାଏ ଆସେ ନାହିଁ। ସେ ଗୋପନରେ ଚାହେଁ ବିନୀତ ପୁରୁଷ। ତା' ପାପ ଯାକୁ ଖରାପ ଲାଗେନି ବା ତା' ପରାକ୍ରମର କିଛି ମନ୍ଦ ଅର୍ଥ ନ ଥାଏ ଯା ପାଖରେ। ଏପରି ଅଭିଳାଷକୁ ଭାଷାରେ ବୁଝାଇବାକୁ ଠିକ୍ ଠିକ୍ ଶବ୍ଦ ନଥାଏ ବୋଲି ଲୋକେ ପାଖାପାଖି କ'ଣ କହି ଦେଇ କାମ ଚଳାଇ ଦିଅନ୍ତି। ଇଏ ବି ସତ କଥା, ମନଠାରୁ ଭାଷାର ଅଭିଧାନ କେବେ ବି ବଡ଼ ହୋଇପାରିବ କେମିତି ? ନାରୀଟିଏ ତା' ଇଚ୍ଛାର ପୁରୁଷ ଠାରୁ ପ୍ରଚଳିତ ବିଶ୍ୱାସର ଢଙ୍ଗରେ ପାପକୁ ଘୃଣା ନକରି, ପରାକ୍ରମକୁ ପ୍ରଶଂସା ନକରି, ସେମିତି ଅନେକ କିଛି ଖୋଜୁଥାଏ। ସେଗୁଡ଼ିକ କହିବାକୁ ସଠିକ୍ ଶବ୍ଦ ନାହିଁ।

ଏତତ୍ ଅନୁମାନର ବିଶ୍ୱରୂପ ତଳେ ଠିଆହୋଇ ରିଲୁ-ଅଜୁଙ୍କ ସମ୍ପର୍କର ଅଙ୍କ କଷିବା କାହାରି ପକ୍ଷରେ ମୋଟେ କଷ୍ଟ ହେଉ ନ ଥିଲା। ହୁଏତ ରିଲୁ ତା ଇଚ୍ଛାର ଅନେକଙ୍କୁ ପାଇଥିବ। କେବଳ ଗୁଜବ ନ ଉଠିବା ପବିତ୍ରତାର ମାପକାଠି ନୁହେଁ। ମାଳୀ ଚତୁର ହେଲେ ଚମତ୍କାରଭାବେ ଗଛର ଯତ୍ନ ନେଇ ଆହୁରି ଚମତ୍କାର ଭାବେ ଛେଳିପଲ ବି ପୋଷିପାରେ। ହୁଏତ, ରିଲୁ ଆଉ କେତେକଙ୍କ ଠାରୁ ଅଜୁକୁ ଅଧିକ ବିନୀତ-ବଶମ୍ବଦ ବୋଲି ଭାବିଥିବ। କେତେକ କ୍ଷେତ୍ରରେ ସମାଜ ଯାହାକୁ ଯେତେ ପାପୀ କହୁ ପଛେ, ଲୁଚେଇ ଲୁଚେଇ ମନ କ'ଣ ଖୋଜେନା କି—ତା'ରି ସାଙ୍ଗରେ କେମିତି ପରିଚୟ ଟିକେ ହୁଅନ୍ତା ଭଲା। ହୁଏତ ଗୋପନ ମନର କିଛି ତତ୍କାଳିକ ଉହଳ ରୋମାଞ୍ଚପାଇଁ ଅଜୁ ବି କାହିଁକି ମନ୍ଦ ହୋଇଥିବ ? ସମାଜ ଅଲଗା ଗରଜରେ ଚଳେ। ତା'ର ନବରତ୍ନମୟୀ ଆଟୋପର ଘେର ଭିତରେ ଦୁଇ ଜଣ ମିଶିବାକୁ ପ୍ରକାଶ୍ୟଭାବେ ପ୍ରତିଷ୍ଠା ଲୋଡ଼ା। ନମିଶିବାକୁ ସ୍ପଷ୍ଟ ଭାବେ ବ୍ୟବଧାନ ଲୋଡ଼ା। ମନ ମନ ବୋଲି ଅପଶବ୍ଦ ରୂପେ ପ୍ରୟୋଗ ହେଉଥିବା ଅସଲରେ ଦେହର ଗରଜ ଏ ଅବୋଧ ବ୍ୟାକରଣ ବାଟେ ସାହିତ୍ୟ ରଚିବାକୁ ମୋଟେ ଇଚ୍ଛା କରେ ନାହିଁ। ଏଇ କଥାଟିକୁ ମଣିଷ ବାରମ୍ବାର କହୁଥାଏ ଏବଂ ବାରମ୍ବାର ଭୁଲିଯାଉଥାଏ।

ଯାହା ସ୍ୱାଭାବିକ, ସମସ୍ତେ ସେଇଆ ଭାବିନେଲେ।

ସାମ୍ନାରେ କେହି ନ କହନ୍ତୁ ପଛେ, ଅନେକଙ୍କର ମତ ଥିଲା: ରିଲୁ ଯାହା ହୋଇଥିଲା, ସେ ତା' ଦେହ-ଭୋକକୁ ସମ୍ଭାଳିଥା'ନ୍ତା କେମିତି। ଦେବୀବାବୁଙ୍କ ବଡ଼ଲୋକୀଯୋଗୁ ଏମିତି ହେଲା। ତାକୁ ବହୁ ଆଗରୁ ବାହାଘର କରିଦେବା ଉଚିତ ଥିଲା।

ସମୟ ସବୁବେଳେ ଯେମିତି ଯେକୌଣସି ଘଟଣା ପ୍ରତି ନିସ୍ପୃହ ହୋଇ ଦୌଡ଼ି ପଳାଏ, ସେମିତି ପଳାଇଲା। ନିରନ୍ତରଭାବେ କାନ୍ଦୁଥିବା ମା'ପରି ମନମାନଙ୍କ ଛଡ଼ା

ରିଲୁର ଆତ୍ମହତ୍ୟା ଏଣିକି କେବଳ ଜାଣିବା ଲୋକଙ୍କପାଇଁ ଏକ ନିମ୍ନସ୍ତରର ଉଦାହରଣ ଭାବେ ସ୍ମୃତିରେ ରହିଥାଏ । ପୃଥିବୀ ଖୁବ୍ ବେଶି ହଲି ନାହିଁ ବା କାହାରି କାହାରି ଗହୀର ଘା ଶୁଖିବାକୁ ବି ଅତି ବେଶି ବିଳମ୍ବ ହେଲା ନାହିଁ । ଦୃଶ୍ୟମାନଭାବେ ଛୋଟିଆ ପରିଣତିଟିଏ ଘଟିଥିଲା । ବଟ ପ୍ରଧାନକୁ ତତ୍ତ୍ୱାବଧାରକ ଓ ଭାଗଦାରି ପଦରୁ ଦେବୀବଲ୍ଲଭ ଉଚ୍ଛେଦ କରିଦେଇଥିଲେ । କେବଳ ଦେବୀବଲ୍ଲଭଙ୍କୁ ଛାଡ଼ି ଆଉ ପରିବାରର କେହି ବି ଗାଁକୁ ଆସନ୍ତି ନାହିଁ । ପୁଅର ଝିଅ, ଝିଅର ଝିଅ ନାତୁଣୀମାନେ ବି ବଡ଼ ହେଲେଣି । ଗାଁ ଦେଖି ନାହାନ୍ତି । ଯେଉଁ ଅନ୍ଧ ଦୁଇଥର ବାଡ଼ି ହଜାଏ ସେ କେବଳ ଅନ୍ଧ ନୁହେଁ, ବୋକାଟାଏ । ରିଲୁ ଛୁଟିରେ ଅଳ୍ପ ଦିନ ସକାଶେ ଗାଁକୁ ଆସି ନ ଥିଲା କି ?

କାହାରି ମୁହଁ ଦେଖି ନିରୀହ ବୋଲି ଭାବିବସିବା ଅତି ଭୁଲ । ଜୀବନର ସମ୍ମାନ ଏବଂ ମୃତ୍ୟୁର ସମ୍ମାନ ଭିତରେ ଦ୍ୱିତୀୟଟି ମାରାତ୍ମକ । ଜୀବନ କାଳରେ ସମ୍ମାନ ଖର୍ବ ହେଲେ ତାହା ମରାମତି କରିବାକୁ ସମୟ ଥାଏ । ଏକତରଫା ଅନ୍ୟମାନଙ୍କୁ ଅବିଶ୍ୱାସ କରି ତେଣୁ ଦେବୀବଲ୍ଲଭ କିଛି ଭୁଲ କରି ନାହାନ୍ତି । ଆଉରି ବି ଗୋଟିଏ କଥା । ଛଳ ଛଇ ଜୀବନରେ ବିଧିୟମାନ ମଣିଷ, ବସ୍ତୁ ବା ଘଟଣାର ତ୍ରି-ଆୟତନ ବା ଥ୍ରୀ-ଡାଇମେନ୍‌ସନ୍ ଚିତ୍ର ଦେଖିବାକୁ ସୁଯୋଗ ପାଏ କି ?

ସତ୍ୟ ସୁନ୍ଦର ସାମନ୍ତରାୟ । ମୋର ସହପାଠୀ । କୋଉଠି ସିଏ ଏକ୍‌ଜିକ୍ୟୁଟିଭ ଇଂଜିନିୟର ଅଛି । ତା' ଡାକ ନାଁ ସତିଆ । ପିଲାଦିନେ ମୁତୋଫା ଅଙ୍କୁର ସେ ଏକାତ୍ମ ସାଙ୍ଗ ଥିଲା ।

ଏବେ ଦିନେ ବଡ଼ିଭୋରୁ ସେ ମୋ ଘରେ ପହଞ୍ଚିଲା । ଡ୍ରାଇଭର ଚଳାଉଥିବା କାର୍‌ରେ ଆସିଥାଏ । ସତିଆକୁ ମୁଁ ଚିହ୍ନି ପାରିଲିନି । ବହୁ ବର୍ଷର ବ୍ୟବଧାନ । ସେ ବି ମୋତେ ଚିହ୍ନି ନପାରିବା କଥା । କିନ୍ତୁ ମୋ ବିଷୟରେ ସବୁ ବୁଝି, ଠିକଣା ଯୋଗାଡ଼ କରି ଯେତେବେଳେ ସେ ମୋ ପାଖରେ ପହଞ୍ଚିଥାଏ, ଠାସକ ମାରି ମୋତେ ଚିହ୍ନିବାରେ ବି ତା'ର ଅସୁବିଧା ହୋଇ ନ ଥିବ । ଇଂଜିନିୟର ସାହାବ, ତଥାପି ସେ ତାଙ୍କ ବିଭାଗୀୟ ନିରୀକ୍ଷଣ ବଙ୍ଗଳାରେ ନ ରହି କହିଲା, ''ତୋ'ରି ଘରେ ରହିବି ।''

''ଆଇଡିଆ ତ ଭଲ ଶୁଭୁଛି । ଆଜି ରବିବାର । ପୂରା ମଜା ଗପରେ ଦିନ କଟେଇଦବା । କିନ୍ତୁ, ଇବେ ହାରାମୀ, କୋଉ ଠିକାଦାରକୁ ଖବର ଦେଇନୁ ତ ଏଠିକି ଆସିବାକୁ ।

ମୁଁ ଏକା ନୁହେଁ, ଭାବୁଛି, ଅନେକଙ୍କୁ ନିଜର ରୋମାଞ୍ଚିତ ଅତୀତ ସମ୍ପର୍କରେ ଶୁଣିବାକୁ, ଗପିବାକୁ ଭଲ ଲାଗୁଥିବ । ସତିଆ ସେ ସୁଯୋଗ ସୃଷ୍ଟି କରିଥିବାରୁ ମୋ ମନ ପୂରି ଉଠିଥିଲା । ଘରେ ଚାକର ପିଲାଟେ ଏବଂ ମୁଁ । ସତିଆର ସାତ୍ତ୍ୱିକ ଅତୀତ ମୋତେ ଜଣା । ତୁଳସୀ ମାଳି ଦୁଇସରି ପକାଉଥିଲା । ଏବେ ବି ଅଛି । ଟିକିଏ ଡାଉଟ୍ ହେଉଥାଏ, ତଥାପି ପଚାରିଦେଲି, ''ଆବେ, ଚଳିବ ତ ।''

ସେ ଦୁଷ୍ଟଟାଏ ପରି ହସିଲା । ତା'ର ଫୁଲ୍‌କା ଫୁଲ୍‌କା ଗାଲ ହଲିଗଲା । ମୋ ପ୍ରଶ୍ନର ତାହା ଉତ୍ତର ନ ଥିଲା । ''ତୋର କ'ଣ ଚଳେ କି ?'' ସେ ପଚାରିଲା ।

''ମୁଁ ତ କୋଉ ଦିନ ସାଧୁ-ଯଶର ଅଧିକାରୀ ନ ଥିଲି ।''

ସେ ତା' ଡ୍ରାଇଭରକୁ କହିଲା । କାର୍ ଡିକିରୁ ବଡ ବ୍ୟାଗ୍‌ଟିଏ ଆସିଲା । ''ତୋ ପିଲାକୁ କହ, ସୋଡ଼ା ବୋତଲଯାକ ଫ୍ରିଜ୍‌ରେ ରଖିଦେଉ । ନିତ୍ୟକର୍ମ ସାରି ବସିଯିବା । ତୋ ସାଙ୍ଗରେ ଗୋଟେ ଗୁରୁତର କଥା ଅଛି ।''

ଗୁରୁତର କଥା ବୋଲି ଶୁଣି ମୁଁ ମୋଟେ ଚମକି ନ ଥିଲି । କାରଣ ମୁଁ ତାକୁ ପ୍ରାୟ ତିରିଶ ବର୍ଷ ପରେ ଦେଖୁଥାଏ । ତାକୁ କହିଲି, ''କିରେ ବେଧୁଆ, ବେକରୁ ମାଳି ଛିଣ୍ଡିଗଲେ ତୁ ଆଗେ ପାଣି ପିଉ ନ ଥିଲୁ ନା ? ଏବେ ବେକରେ ମାଳି ଥାଇ ମଦ ବି ଗଳିଯାଉଚି ।''

ଯାଇତାଇ ଭାବେ ନୁହେଁ । ଠୋସ୍ ଜମେଇ ଦୁଇ ଜଣଯାକ ବସିଗଲୁ । ପ୍ରାଣ ଉଦାର, ମନ କଅଁଳ । ଛଳ ଛଳ ବାକ୍ୟ ଦମ୍ଭିଲାପରି ଶୁଭୁଥିବା ସମୟ ଯେମିତି ଆସେ, ସେମିତି ଆସିଗଲା । ଅସରନ୍ତି ଗପ । ସିଏ ତା' ବ୍ୟକ୍ତିଗତ ଗୁରୁତର କଥା କହିଲା । ତା' ଝିଅର ତିନି ଜାଗାରେ ବାହାଘର ଭାଙ୍ଗିସାରିଛି । କେବଳ ଗୋଟାଏ ଗୁଜବ ସକାଶେ । ସେଇ ଗୁଜବକୁ କେତେକ ଖଳଲୋକ ହିଂସା କରି ସାଙ୍ଗରେ ଦଉଡ଼ୋଉଛନ୍ତି । ଏଥର ଯେଉଁ ପିଲାଟିସାଙ୍ଗରେ ପ୍ରସ୍ତାବ ପଡ଼ିଛି, ତା' ବାପା ମୋର ଜଣେ ଅଧସ୍ତନ ସହକର୍ମୀ । ''ତୁ ତାଙ୍କୁ ଯେମିତି ହେଲେ ସତ କହି ବୁଝେଇଦବୁ । ମୋ ଝିଅ କ'ଣ ତୋ ଝିଅ ନୁହେଁ ?''

ସତିଆଟା ସତରେ ବୁଦ୍ଧିଆରା । ଖବର ଯୋଗାଡ଼ କରି ମୋ ପାଖ ପର୍ଯ୍ୟନ୍ତ ଆସି ପାରିଛି । ତା ବିଚକ୍ଷଣତାକୁ ମୁଁ ତାରିଫ୍ କରୁଥିଲି । ଏ ଭଳିଆ ଲୋକ ନ ହେଲେ ପୂର୍ତ୍ତ ବିଭାଗଟା ସମୁଦାୟ ଭାବେ ଏତେ ଭଲ ଚାଲୁଥା'ନ୍ତା କେମିତି ! ''ହଇରେ, ଗୁଜବଟାକୁ ତୁ ସଜାଡ଼ି ପାରିନୁ, ଏତେ କଷ୍ଟକରି ଏତେ ବାଟ ଦଉଡ଼ି ଆସିଛୁ ?''

ନିଜ କଥାରୁ, ଧୀରେ ଧୀରେ ଗୁଜବ କାହାକୁ କହନ୍ତି ବୁଝାଇବାକୁ ସେ ରିଲୁର ଆତ୍ମହତ୍ୟା ପର୍ଯ୍ୟନ୍ତ ପଳାଇଲା ।

ତିନି ଚାରି ଦିନ ଆଗରୁ କୁଆଡ଼େ ରିଲୁ ଗାଁକୁ ଆସିଥାଏ । ଯୋର ତୁଠ ଏମିତି ନିର୍ଜନ । ତଥାପି ମଧ୍ୟ ଅନ୍ଧାର ନ ହେଲେ ସେଠାକୁ ସେ ଗାଧୋଇବାକୁ ଆସେନା । ସ୍ୱାଭାବିକ କଥା, ବାଥ୍ ରୁମ୍‌ରେ ଗାଧୋଉଥିବା ଯାହାପାଇଁ ହେଲେ ବି ଖୋଲା ତୁଠ ଅଡୁଆ । ରିଲୁ ତ ସହଜେ ପୂର୍ଣ୍ଣଯୌବନା । ଅଜୁ ଏଇ କଥାକୁ ନିଘା କରିଥାଏ । ବିଧି ନିର୍ଦ୍ଦିଷ୍ଟ ସେଇ କାଳ ସନ୍ଧ୍ୟା । ଅଜୁ, ସତିଆ ଆଗରୁ ଯାଇ ଯୋର କୂଳ କନିଅର ଗଛ ଉପରେ ଲୁଚି ବସିଥିଲେ । ପ୍ରକୃତିର ଅନ୍ଧାରକୁ ରିଲୁ ସିନା ଭରସା କରିଥିଲା, ମଣିଷଙ୍କ ମନର ପାପ ଯେ ଅନ୍ଧାର ଠାରୁ ଆହୁରି ଘନ କଳା, ସେ ଅବା ଜାଣିଥା'ନ୍ତା କିପରି ? ମୁକୁଳା ମନ, ମୁକୁଳା ଦେହ । ରିଲୁ ବେଶ୍ ଖୁସୀରେ କୂଳରୁ ବଡ଼ ଶିଅ ପର୍ଯ୍ୟନ୍ତ କଚାଡ଼ି ହୋଇ ଗାଧୋଉଥାଏ । ବଡ଼ ଶିଅ ତଳେ ଥଳ ପାଏନି, ଏକଥା ସମସ୍ତେ ଜାଣନ୍ତି । ସେ ବି ଯାଉଥାଏ ସେତିକି ଯାଏ । ସତିଆ କହିଲା, "ମୁଁ ସେତେବେଳେ ଅଜୁକୁ ଦେଖୁ ନ ଥାଏ ।" ବିଚଳିତ ମନଯୋଗୁ ହେଉ ବା ଆଉରି ତୁଙ୍ଗିବାପାଇଁ ନହକା ଡାଳରେ ପାଦ ପକାଇବା ଯୋଗୁ ହେଉ, ଅଜୁ ଦୁମ୍‌ଭୁଷ୍ ହୋଇ କନିଅର ମୂଳ ଯୋର ଭିତରକୁ ଗଳି ପଡିଲା । ରିଲୁ ଚମକି ପଡ଼ିଲା । ବଡ଼ ଶିଅ ତଳକୁ ତା' ଗୋଡ଼ ଖସିଗଲା । ବୋଉ ଲୋ.. ପରି ବିକଳ ଚିତ୍କାରଟାଏ ସେ ଆରମ୍ଭ କରିଥିଲା । ଯେଉଁ ବାକ୍ୟ ପୂରା ହୋଇପାରିନଥିଲା । ଅଜୁ ଯେଉଁଠି ପଡ଼ିଲା ସେଠି ଦି'ପୁରୁଷ ପାଣି । ତା'ରି ଲୁଙ୍ଗି ତା ଗୋଡ଼ରେ ଛନ୍ଦି ହୋଇଯାଇଥିଲା । ପାଞ୍ଚସାତଟା ବାଳିଆ ମାଛ ଜିଅଳରେ ପଡ଼ି ଏକା ସାଙ୍ଗରେ ଫଡ଼୍‌ଫଡ଼୍ ହେଲେ ଯେମିତି ଶୁଭନ୍ତା, ସେଠି କୁଆଡ଼େ ସେମିତି ଶୁଭୁଥିଲା । ସତିଆ ଭାରି ଇମୋସନାଲ୍ ହୋଇ କହି ଚାଲିଥାଏ ।

ଅନ୍ଧାର ବଢ଼ିଲେ ବିଲେଇର ଡୋଳାପୁଅ ବଡ଼ ହେଉଥିବା ପରି ସତିଆ ଏ ଦୁଇଟି ଯାକ ଅସମାପିକା ଦୃଶ୍ୟ ଅନ୍ଧାରରେ ଦେଖିଥିଲା । ଡରିଗଲା । ସେ ଗଛରୁ ଓହ୍ଲାଇ ତୁନିହୋଇ ଘରକୁ ପଳାଇଲା । ସତିଆ ଓରଫ ସତ୍ୟ ସୁନ୍ଦର ସେତେବେଳକୁ ଆଇ.ଏସ୍‌ସି.ର ଛାତ୍ର ।

ଯୋର କୂଳ ପୁଣି ଶୁନ୍‌ଶାନ୍ ହୋଇଯାଇଥିବ, ଆଗାମୀ ଦିନର ଅସଭ୍ୟ ଗବେଷଣା ପର୍ଯ୍ୟନ୍ତ ।

ମୁଁ ଭାବିପାରୁ ନ ଥିଲି : କ'ଣ ଶୁଣୁଛି, କାହାଠାରୁ ଶୁଣୁଛି !

ସତିଆ ମୋ ସାମ୍ନାରେ । ଅଥଚ ସେ ମୋତେ ଦେଖାଯାଉ ନ ଥିଲା । ରାଣ ପକାଇ କହୁଚି, ମଦନିଶାଯୋଗୁ ନୁହେଁ । ବରଂ ଖୁବ୍ କମ୍ ଦେଖିଥିବା ରିଲୁର ମୁହଁଟି ମୋତେ ବେଶୀ ଦେଖାଯାଉଥିଲା । କଂସେଇ ପାଖରେ ଥୁଆ ହୋଇଥିବା କଟା ଛେଳି ମୁଣ୍ଡର ଖୋଲା ଆଖି ପରି ଦୃଷ୍ଟିରେ ମୁଁ ରିଲୁ ମରଣର ସତ୍ୟକୁ ଉଣ୍ଡାଳୁଥିଲି । ତା' ନାଁରେ ଉଠିଥିବା ସବୁ ଦୁର୍ନାମ ମନେ ପକାଇବାକୁ ଚେଷ୍ଟାକରୁଥିଲି ।

ଅଳ୍ପ ସ୍ତବ୍ଧ ମୁହୂର୍ତ୍ତ ବିତିଯିବା ପରେ ସତିଆ କହିଲା, ''ମୋ ଝିଅ କିଏ, ତୋ ଝିଅ କିଏ ? ମୁଁ ହତାଶ ହୋଇଗଲିଣି । ତୋତେ ଦାୟିତ୍ୱ ଦେଲି ।''

''ଟିକିଏ ବୁଲେଇ ବଙ୍କେଇ ହେଲେ ବି ସେତିକିବେଳେ ସତ କଥାଟା କହି ପାରିଲୁନି ? କେଡେ ସୁନ୍ଦରିଆ ଝିଅଟିଏ । ତାକୁ ଦୁଇ ଥର ମରିବାକୁ ପଡ଼ିଲା ! ଥରେ ଏମିତି । ଆଉ ଥରେ ତା' ରୂପ ପାଇଁ । ଲୋକଙ୍କ ଅନୁମାନଯୋଗୁ । ତୁ ସତ କହିଥିଲେ, ମାଇଚିଆ ସମାଜଠାରୁ ରିଲୁଟି ବିଚାରୀ କେତେ ଆହା ପଦ ନ ଶୁଣିଥାଆନ୍ତାଟି ।''

''ମୋ ଝିଅ କଥା କ'ଣ କରିବୁ କହ ମ ?'' ଏକ୍ସ୍ୟୁନର୍ ଅତି ବିକଳ ଅଥଚ ସ୍ୱାଭାବିକ ଭାବେ ପଚାରୁଥିଲେ ।



# ଦ୍ରୌପଦୀ

ନାଁ ଦେବା ବ୍ୟାପାରରେ ଅଜାଙ୍କ ଦୂରଦୃଷ୍ଟିର ଘୋର ଅଭାବ ତଥା ଅକଲର ବାଜେ ଇସ୍ତମାଲ୍ ସମ୍ବନ୍ଧରେ ସିଏ ପ୍ରାୟ ସପ୍ତମ ଶ୍ରେଣୀରେ ପହଞ୍ଚିବା ପୂର୍ବରୁ ନିଜ ମନରେ ସନ୍ଦେହ ଉପୁଜେଇ ସାରିଥିଲା । ଅଜାଙ୍କ ବିରୁଦ୍ଧରେ ତାଚ୍ଛଲ୍ୟ । ଓଃ ସତେ ଯେମିତି ବ୍ୟାସଦେବ ! ସେ ଆଉ ଇହଜଗତରେ ନ ଥା'ନ୍ତି । ଏତିକି ଛଡ଼ା ତା'ର ଯତ୍କିଞ୍ଚିତ ସ୍ମୃତିରେ ଅଜାଙ୍କ ବ୍ୟକ୍ତିତ୍ୱ ଉଣା ହେବାପାଇଁ କିଛି କାରଣ ନ ଥିଲା । ବରଂ ବେଳେବେଳେ ସେ ଦୁର୍ବଳ ହୋଇ ଭାବୁଥିଲା — ହେ ପୂଜ୍ୟ ତ୍ରିବିକ୍ରମ ବଳବନ୍ତ ରାୟ ମେଘନାଦ ମହାପାତ୍ର, ଦେଉଳ ନ ତୋଳିଲ ନାଇଁ ପଛେ, ଏମିତିକା କାମଟିଏ କାହିଁକି କଲ ଯେ ମୋ ଜୀବନ-ବାଟରେ ତୁମ ନାଁ ପଡୁଛି । ଏତିକି ନ କରିଥିଲେ ମୁଁ ବି ସମସ୍ତଙ୍କ ଭଳି ତୁମ ସ୍ମୃତିକୁ କେତେ ଆଦର ନକରୁଥା'ନ୍ତି ଟି !

ଅନ୍ୟଠାରୁ ଆଶା କଲାବେଳେ ସମସ୍ତେ ଭାବନ୍ତି, ଯାହା ଭଲ ତାହା ଚାରିଆଡୁ ଭଲ ହେବା ଉଚିତ । ଟିକିଏ ବିଗିଡ଼ିବା ଓ ସବୁ ବିଗିଡ଼ିବା ଯେମିତି ଏକା ପରିକା । ମନ କାହିଁକି ଝାଉଁଳେ ? ନିରବଧି ଏଇ ଜିଜ୍ଞାସାର ବକ୍ର-ବଳୟ ଭିତରେ ସମସ୍ତେ ଅସହାୟ । ଦେବତା ହେବାକୁ ବି ଇଚ୍ଛାରେ କୁଦନ୍ତି, ଅସୁର ହେବାକୁ ବି ଇଚ୍ଛାରେ ଡଙ୍କାନ୍ତି । ପଡ଼ିଆର ତଳ ଗାରଗୁଡାକୁ ନ ଅନେଇ ଉପର ବଲ୍‌କୁ ଅନେଇ ତା' ପଛରେ ଦଉଡ଼ି ଦଉଡ଼ି ବେଶି ଅଫ୍‌ସାଇଡ୍ କରନ୍ତି ଖାସ୍ ଏଇଥିସକାଶେ । ବଡ଼ ମଣିଷଙ୍କ ଅବସ୍ଥା ଯଦି ଏଇଆ, ସିଏ ତ ସହଜେ ପିଲାଟେ ।

ଲୋଫର୍ ଟୋକାଗୁଡ଼ାକ ତାକୁ ଛିଗୁଲାନ୍ତି । ନାନା ରକମରେ । ମୋଟେ ସିଧା ନୁହେଁ । ଶ୍ଳେଷ ଯୁକ୍ତ । କିଏ କହୁଥାଏ, 'ମୁଁ ଆଜି ଟିକେ ଅର୍ଜୁନ ହେବି' ତ ଆଉ କିଏ କହୁଥାଏ, 'ନାଇଁ ବେ ତୁ ଆଜି ସହଦେବ ହୋଇ ଯା ।'

ପୋଡାମୁହାଁଗୁଡ଼ାକ ମହାଭାରତରୁ କେତେ ନଜାଣିଛନ୍ତି ଟି ? ପାଠ ସେତିକି ଜାଣିଥିଲେ କ୍ଲାସରେ ମୋଟେ ହିନସ୍ତା ହେଉ ନ ଥାନ୍ତେ । ସେମାନଙ୍କ ଇଙ୍ଗିତ ସଠିକ୍ ବୁଝିବାପାଇଁ ସିଏ ବି ଘୃଣାରେ ପୁରାଣର ନାନା ଆଖ୍ୟାନ ଜାଣିପକାଇଲା । ଟୋକାଗୁଡ଼ାଙ୍କ କଥା ସେ ଅପାକୁ କହିଦିଏ । ସେଇସବୁ ଭାଷାର ଅର୍ଥଠାରୁ ଅନୁଚ୍ଚାରିତ

ଅଶ୍ଳୀଳତା ସେ ବେଶ୍ ବୁଝିପାରୁଥାଏ । କିନ୍ତୁ ଏଇ କଥାଟି ସେ ଅପାକୁ କହେନି । ଯେତେ ନିଜର ହେଉପଛେ, ସେ କାହିଁକି ଜାଣିବ ଯେ ମୁଁ ବୁଝିପାରୁଛି ବୋଲି ?

ଅପା ଠାରୁ ତାକୁ ଆଉ କେହି ବେଶି ସୁନ୍ଦର ଦେଖାଯାଆନ୍ତିନାହିଁ । ସେ ବାରମ୍ବାର କହି ପକାଏ । ଅପା ରାଗେନି କି ଖୁସୀ ହେଲାପରି ଦେଖା ଯାଏନା । ବରଂ କେତେଥର କହିଛି, 'ତୁ ଏମିତି ଝଡ଼ି ମରୁଚୁ କାଇଁକି କିଲୋ ? ତୋ ବେଳ ଆସିଲେ ତୁ ମୋଠୁଁ ସୁନ୍ଦରୀ ହେବୁ' । ଅପା ଖିନ୍‌ଖିନ୍ ହେବା ଯୋଗୁ ସେ ଚୁପ୍ ହୋଇ ଯାଉଥିଲା । ତଥାପି ଏକୁଟିଆରେ ବେଳେ ବେଳେ ସେ ଭାବୁଥିଲା, ଅପା କଥା କ'ଣ ସତ ହବ ?

ଅପା ତାକୁ ବୁଝାଏ : ନାଁରେ କ'ଣ ଅଛି ଲୋ ? ପାଞ୍ଚ ପତି ଥାଇ ଆଉ ଗୋଟିଏ ପାଇଁ ମନ ବଳେଇ ବି ପୁରାଣ ଦ୍ରୌପଦୀଙ୍କୁ ସତୀ ବୋଲି କହିଛି କି ନା ?

ସେ ନିଜେ ବି ଭାବେ । ତା'ଠାରୁ ଦୁଇ କ୍ଲାସ ଉପରେ ପଢ଼େ ସୀତା ଅପା । ଅନ୍ୟମାନଙ୍କ ସତର୍କ ଚୁପ୍‌ଚାପ ଆଲୋଚନାର କେନ୍ଦ୍ର-ଚରିତ୍ର । ସିଏ ଦୁର୍ନାମକୁ ଖାତିର କରେନି । ପ୍ରତାପ ସାର୍, ବଇଁଶୀ ପଣ୍ଡିତେ - ଛି ଛି । ସେ କେତେବେଳେ ପଢ଼େ କେହି ଜାଣନ୍ତିନି । ଭଲ ମାର୍କ ରଖେ । ଥରେ ତା' ବିଜ୍ଞାନ ଖାତାରୁ ଖଣ୍ଡେ ଖରାପ ଫଟୋ ମୋହିତ୍ ସାର୍ ପାଇଥିଲେ । ସୀତା ଅପା କାନ୍ଦୁଥିଲା । ତାଙ୍କ କ୍ଲାସ ସାରା ସବୁ ପୁଅ ପିଲା ଚାରି ବେତ ଲେଖା ମାଡ଼ ଖାଇଲେ । ସେମାନଙ୍କ ଭିତରୁ ବି କେତେ ଜଣ ତାକୁ ସାନ୍ତ୍ୱନା ଦେବାକୁ ହୁକୁ ହୁକୁ ହେଉଥିଲେ ଅଥଚ ସୀତା ଅପା କାହାରିକୁ ଖାତିରି କରୁ ନ ଥିଲା । କାନ୍ଦି ଦେଲେ ଦୋଷ ବାଟ ମୋଡ଼ି ଅନ୍ୟଆଡ଼େ ଚାଲିଯାଏ କି ?

ସୀତା ଅପା ବଢ଼ିଲା ବଢ଼ିଲା ଦେଖାଯାଏ ସିନା, ମୋ ଅପାଠୁଁ ମୋଟେ ସୁନ୍ଦରୀ ନୁହେଁ । ଅପା କହିଛି, ମୁଁ କୁଆଡେ ତା'ଠୁଁ ଆଉରି ସୁନ୍ଦରିଆ ହେବି । ସୀତା ଅପା ଯଦି ମୋ ପାଇଁ ଉଦାହରଣ ହୁଅନ୍ତା, ମୁଁ କେତେ ମାର୍କ ନ ରଖନ୍ତି ଟି ! କାହିଁକି କେଜାଣି ସେ ଡରିଯାଏ ।

ନିଜର ମନକୁ ଅପାର ରୂପ ଭିତରେ ପୂରାଇ ସେ ନାନା କଥା କଳ୍ପନା କରିବସେ । ମହୁଆ ଲାଗେ ମନ । ସେଥିପାଇଁ ଆହୁରି ପ୍ରସ୍ତୁତ ନ ହୋଇଥିବା ଦେହଟି ଅକାରଣରେ ଭିଡ଼ିମୋଡ଼ି ହୁଏ । ଅଇନା ସାମ୍ନାକୁ ଅଜାଣତରେ ଚାଲିଯାଏ ସେ । ନିଜ ପ୍ରତିଛବି ଛଡ଼ା ଅଇନା ଭିତରେ ବହୁତ ଜାଗା ଖାଲି ରହିଯାଏ । ସେ ଡରି ମରେ । ମନକୁ ଫେରାଇ ଆଣେ । ତା' ନାଁ ଦ୍ରୌପଦୀ ହେଲା କାହିଁକି ?

ସୀତାଅପା ବୋକୀ ନା ଚାଲାଖ ?

କାଳ ଗଡ଼ି ଚାଲିଛି । ବିଷ୍କ-ବିତର୍କ, ବଜ୍ଜାତ୍‌ଗିରି ଏକାସାଙ୍ଗରେ । ନିଜ ରୂପ ସଂପର୍କରେ ଅପାର ଭବିଷ୍ୟତବାଣୀ ସତ ଠାରୁ ବରଂ ବହକ ହେବାପରି ତାକୁ ଲାଗୁଥାଏ । ନାଁଟା ଏଣିକି ବେଶିବେଶି ଅଖାଡୁଆ ଶୁଭୁଥାଏ । ଚେତନାରେ ଚିନ୍ତା ଘାଣ୍ଟି ହେଲେ ତାହା ଦର୍ଶନ ବା ବୈରାଗ୍ୟ ହେଉନଥିବା ପରି ଦ୍ରୌପଦୀର ଅବସ୍ଥା । ଅଇନା ପାଖକୁ ତା' ପାଦ ଆପେ ଆପେ ଚାଲିଯାଉଥାଏ । ସତେ ଯେମିତି ମନଟା ସାରା ତା'ର ପ୍ରତିବିମ୍ବର ଏକ ଅସରନ୍ତି ଗଜରାହାର । ଗୋଟିଗୋଟି ସବୁ ଫୁଲ ଅନାହୂତ ଭାବେ ଅନିଷା-ଯୋଗ୍ୟ । ଅପରଛନିଆ ନାଁଟାକୁ ଅଲଗା କରି ଏଣିକି ସେ ନିଜକୁ ଭଲ ପାଇବାକୁ ଆରମ୍ଭ କଲା । ଅଇନାକୁ ଭଲ ପାଇଲା । ସେଥିରେ ତା' ପ୍ରତିବିମ୍ବ ନଥିଲା ଅଂଶଗୁଡ଼ାକ ଥାଇ ନଥିବାପରି ଲାଗୁଥିଲା ତାକୁ ।

ଥରେ ଅଇନା ତାକୁ କହିଲା—ତୁ ମନ କଥା ବୋଉକୁ କହ । ବୋଉମାନେ ସବୁକଥା ବୁଝିପାରନ୍ତି ।

ଉଡ଼ିଯାଇଥିବା ଚାଳକୁ ବତା କାମଡ଼ା ବାନ୍ଧି କାବୁ କରିବ କ'ଣ ବୋଉ ତାକୁ ଆଉରି ଆଲୁରେଇଦେଲା । ମନଟାକୁ ଏତାକେତା କରିଦେଲା । "ମଲା ମୋ ଫୁଲେଇ, ଏଇ ବଅସରୁ ଏତେ ଛଟକ ! ମୋ ନାଁ ତ ଫେରେ କୁନ୍ତୀ । କଅଣ ବିଗିଡ଼ି ଯାଇଚି ମୋର ?"

ଅଇନା ତାକୁ ଭୁଲ୍ ପରାମର୍ଶ ଦେଇ ନ ଥିଲା । ବୋଉ ବୋଧହୁଏ ବାପାଙ୍କୁ କ'ଣ କହିଥିଲା । ମାଟ୍ରିକ୍ ପରୀକ୍ଷା ପାଇଁ ଫର୍ମ ଫିଲ୍‌ଅପ୍ ବେଳକୁ ତା' ନାଁ ଲେଖାହେଲା—ଦୀପିକା ଦାସ । ଠିକ୍ ହେଲାଯେ, ହେଲେ ବୋଉ ଯଦି ଟିକେ ଆଗରୁ ସୁରାକ୍ ଦେଇଥା'ନ୍ତା, ଆଉରି କେତେ ଚମତ୍କାର ନାଁ ଥିଲା । ଯାହାହେଉ, ଦୀପିକା ନାଁଟି ବି ଏଣିକି କେମିତି ତାକୁ ଭଲ ଶୁଭିବ, ସେଥିପାଇଁ ସେ ମନ ଉଢ଼େଇଲା ନାନା ଉଦାହରଣ ଖୋଜିବାକୁ । ଏନି-ବେଟର୍-ଇଜ୍-ଓ୍ୱର୍ସ-ଦ୍ୟାନ୍-ଦି-ବେଷ୍ଟ । ଭଲ ଅଛି ସତ, ମାତ୍ର ଦ୍ରୌପଦୀଠୁଁ ଦୀପିକା କାହିଁରେ କେତେ ଭଲ । ଆଉରି ଭଲ ବି ହୋଇପାରିଥା'ନ୍ତା ।

ନାଁକୁ ଡରୁ ନ ଥିଲା ସିଏ । ଟୋକାଗୁଡ଼ାଙ୍କ ଅସଭ୍ୟ ଇଙ୍ଗିତକୁ ଘୃଣା କରୁଥିଲା । ଆଉ ସେ ଦ୍ରୌପଦୀ ନୁହେଁ, କିନ୍ତୁ ଭୁଲୁନଥାଏ । ବରଂ ନିରୋଳାରେ ବ ାସ-ଜ୍ଞାନ ବର୍ହିଭୂତ ନାନା ଅର୍ଥ ସେଥିରୁ ବାହାର କରି ସେ ଆମୋଦିତ ହେଉଥାଏ । ଲା ' ମାଡ଼େ ଛି, ଏମିତି ଭାବିବାର ବୟସ ମୋର ହୋଇନି ।

ଏକଲା ମନପାଇଁ ଅଶ୍ଳୀଳତାର ଦୌରାତ୍ମ୍ୟ ନ ଥାଏ । ଗହୀରିଆ ମନ ଉପରରୁ ଉପରକୁ ଯେତେ ଉତୁରି ଆସେ, ଡଉଲ ଡାଉଲ ହୋଇ ଛାଣି ହୋଇଯାଏ ଭାବନାଗୁଡ଼ାକ । ମନଦ୍ଵାରା ଆହୃତ ସବୁ ଅଶ୍ଳୀଳତା କାଉଲ ବାଉଲ ହୋଇ ଲୁଚିଯାଆନ୍ତି ନିମିଷକ ଭିତରେ । ଆହା, ସାମ୍ନାରେ ପରିବେଷଣ କଲାବେଳକୁ ଗ୍ଲାନି ବା ପାପବୋଧ ପରି ପଙ୍କ କାଦୁଅର ଛିଟା ବସନ, ଭୂଷଣ, ହେମ-କଙ୍କଣ, ତନୁ, ନୟନ ବା ପାଖ ପବନରେ ବି ଲାଗିନଥାଏ । ଏକ୍‌ଦମ୍ ସମ୍ଭବ—ସୀତା ଅପା କାହିଁକି ଏତିକି ଭାବିପାରୁ ନଥିଲା ? ବାରମ୍ବାର ଧରା ପଡୁଥିଲା । ସୀତା ଅପା ବୋକୀ ନା ଚାଲାଖ ?

ଅପାର ବାହାଘର ସରିଯାଇଥାଏ । କଲେଜରେ ପଢିବାକୁ ସେ ସହରକୁ ଗଲା । ତାଙ୍କର ସେଠି ଘର ଥାଏ । ଖାସ୍ ତା'ରି ସକାଶେ ବୋଉ ବି ଗାଁ ଛାଡ଼ିଲା । ନିଜ ଗୁରୁତ୍ୱ ଏତେ ? ସେ ସଚେତନ ହୋଇପଡ଼ିଲା । ରକ୍ଷା । ନୂଆ ନିଆରା ବାୟୁମଣ୍ଡଳ । ଅନ୍ତତଃ ଦ୍ରୌପଦୀ-ସମ୍ଭୂତ ଅଶ୍ଳୀଳ ପରିହାସ ସେଠି ସେ ଆଉ ଶୁଣିବ ନାହିଁ ।

କଲେଜରେ ଇସ୍କୁଲ ପରି ଡ୍ରେସ୍‌ର କଟକଣା ନ ଥାଏ । ମନ-ପ୍ରଜାପତି ଯେତେ ଉଞ୍ଚ ଗଗନକୁ ଉଡ଼ିବାକୁ ଚାହିଁଲେ ବି ଡିଜାଇନ ପାଇଁ ଦରଜିଙ୍କର ଅଭାବ ନ ଥାଏ । ରୂପ ସୁନ୍ଦରକୁ ବେଶ ସୁନ୍ଦର । ଭଲ ଦିଶିବାର ଯେତେପ୍ରକାର ମନସ୍ତାତ୍ତ୍ୱିକ ବାହ୍ୟ ସଂକ୍ରମଣ ସମ୍ଭବ, ସବୁ ଦୃଷ୍ଟିରୁ ଦୀପିକା ବାରି ହୋଇଗଲା । ଗାଁ ସ୍କୁଲ ନୁହେଁ ଯେ ନକୁଳ, ସହଦେବ ଗୁଡ଼ାଏ ବାହାରିଥା'ନ୍ତେ । ବରଂ, ସଂଭ୍ରମତାରେ ପିଲାଏ ଆଢ଼େଇ ଯାଉଥିଲେ । ବେଳେବେଳେ ଗୋଟିଏ ପ୍ରଶ୍ନ ତା' ମନକୁ ଆସୁଥାଏ । କ'ଣ ଆୟତନ ବଡ଼ ହେଲେ ଫୁଲ ମହକ ହଜାଏ ନା ଲୋକଙ୍କ ଘ୍ରାଣଶକ୍ତି କମିଯାଏ ? ତଥାପି, ସେ ଗାଁ ଲୋଫରଗୁଡ଼ାଙ୍କ ଅପ୍ରତ୍ୟାଶିତ କମେଣ୍ଟକୁ ଘୃଣା କରୁଥିଲା । ଏତେବେଳକୁ ତା'ର ବୟସ ହୋଇଗଲାଣି ବୁଝିବାକୁ ବା ମନ ଖେଳେଇବାକୁ—କାଇଁ ତା'ରି ସାଙ୍ଗର, ତା'ରି ବୟସର ଆଉ କେତେ ଝିଅଙ୍କୁ ତ କେହି କିଛି କହୁ ନ ଥିଲେ । ସେଥିପାଇଁ ତା'ରି ପୂର୍ବତନ ନାଁ ଦାୟୀ ଥିଲା ବା ଅପାର ଭବିଷ୍ୟତବାଣୀ !

ସ୍କୁଲ-କଲେଜ ମ୍ୟାଗାଜିନ୍‌କୁ ଉଚ୍ଚାଙ୍ଗ ସାହିତ୍ୟଭାବେ ଲୋକେ ଗ୍ରହଣ କରନ୍ତୁ ବା ନ କରନ୍ତୁ, ସେହିପରି ଚନ୍ଦରଉଦିଆରେ ଥରେ ଦୀପିକା ଝଲସି ଯାଇଥିଲା । ସେ ମହକ ଭୁଲିବାର ନୁହେଁ । ଶିଢ଼ିର ପହିଲି ପଳି ଅବଶ୍ୟ ଖୁବ୍ ଗୋଟେ ଗୁରୁତ୍ୱପୂର୍ଣ୍ଣ ପାହାଚ ନୁହେଁ । କୁଦାମାରି ଜଣେ କ'ଣ ସିଧା ଆରଟାକୁ ଚଢ଼ିପାରନ୍ତାନି କି ? କିନ୍ତୁ ତା'ପାଇଁ ସେଥିରେ ଭାବାବେଗ ରହିଥାଏ, ଯାହା ନାଭି ସହିତ ମାତୃ ଜରାୟୁର ନିଳୟ

ପରି । ଆଉ ଦରକାର ନଥାଏ, କିନ୍ତୁ, ସତ୍ୟକୁ ଅସ୍ୱୀକାର କରି ହୁଏନା । ଆଡ୍‌ମିଶନ୍‌ର ପ୍ରାୟ ଦେଢ଼ ବର୍ଷ ପରେ । ମ୍ୟାଗାଜିନ ଖଣ୍ଡିଏ ସିଏ ବି ପାଇଥିଲା । ନିଘା ଦେଇନଥିଲା । ଦେଇ ନ ଥା'ନ୍ତା ମଧ୍ୟ । ସେତେବେଳକୁ ବେଶ୍ ଘନିଷ୍ଠ ହୋଇସାରିଥିବା ସରୋଜିନୀ ତାକୁ କାଢ଼ି ଦେଖାଇଦେଲା କବିତାଟିଏ । ପ୍ରେମ ପ୍ରେମ, ସ୍ତୁତି ସ୍ତୁତି ପରି । କେହି ଜଣେ ଅଧ୍ୟାପକ ଲେଖିଛନ୍ତି । ନାଁ ଦେଖି ସରେଜିନୀ ଜିଗର କଲା —ଏଇଟା ତୋତେ ଲକ୍ଷ୍ୟ କରି ଲେଖାହୋଇଛି । ସେ ସାର୍ କିଏ ବେ ?

ଏଡ଼େ ବଡ଼ କଲେଜରେ ସବୁ ସାର୍‌ଙ୍କୁ ଚିହ୍ନିବା ସମ୍ଭବ ନ ଥିଲା । ପ୍ରଶଂସା ଶୁଣିଲେ ଯେମିତି ଝିଅମାନଙ୍କର ରୂପ ଉକୁଟେ ଏବଂ ମୁହଁ ଝାଉଁଳେ, ସେମିତି ଅବସ୍ଥାରେ ଦୀପିକା କହିଦେଲା, ''ଫାଲ୍‌ତୁ କଥା କହିବୁନି ।''

ଆଉ ଖୁବ୍ ବେଶି ଅଇନାକୁ ଅନାଉନଥିବା ଝିଅଟି ସେଇ କବିତାଟିକୁ ବାରମ୍ବାର ଅଇନା ସାମ୍ନାରେ ବସି ପଢ଼ିଲା । ଯେମିତି ମନ ପରି ଅନନ୍ତ ସେ ଗୀତ । ଯିଏ ବା ହୁଅନ୍ତୁ ସେ ଅଜଣା ଅଧ୍ୟାପକ, ମୁଁ ଏଇ କଲେଜରେ ପହଞ୍ଚିବାର ଅଳ୍ପ ଦିନ ଭିତରେ ଜଣେ ଭାବୁକର ମାନସ-ପ୍ରତିମା ହୋଇପାରିଲି । ମୁହଁ କହୁଥାଏ, 'ମୁଁ ନୁହେଁ' । ମନ କହୁଥାଏ, 'ହେ ମା' ମଙ୍ଗଳା, ମୋ ଛଡ଼ା କେହି ଆଉ ନ ହୋଇଥାନ୍ତୁ' ।

ବିଶେଷ କିଛି ଘଟଣା ନାହିଁ କି ଦୁର୍ଘଟଣା ନାହିଁ, କଲେଜରେ ତିନି ବର୍ଷ କଟି ଗଲାଣି ଦୀପିକାର । ଡାଆଣା ଆଖିମାନଙ୍କ ଫରିବ୍ ଫିସାଦି ଜାଣି ପାରୁଛି ସିଏ । ମଝି ହିଡ଼ରେ ଠିଆହୋଇ ଚତୁର୍ଦ୍ଦିଗକୁ ଆଖି ବୁଲାଇବା ଏବଂ ମାଳମାଳ କଳ୍ପନା ଉଣ୍ଡାଳି ସେଗୁଡ଼ିକୁ ଗୋଟିଗୋଟିକିଆ କାନ୍‌ଭାସ୍‌ରେ ନିଜ ସହିତ ସେଟ୍ କରିବା ପରି ମନୋହରୀ ବୟସରେ ସେ ଇମୋସନ୍‌ର ଖୁଚୁରା ବ୍ୟାଗ୍ ଅଣ୍ଟିରେ ରଖିପାରିଥିଲା । କିଏ ଦଶପଇସି ବା କିଏ ପଚିଶପଇସି ପାଇବା ଯୋଗ୍ୟ ସେ କଥା ସେ ଜାଣି ପାରୁଥିଲା । ପ୍ରତିଭାର ନାନା ଦିଗ ଥାଏ । କାହାରି ଠାରେ ତାହା ଅଛି କି ନା ଏ କଥା ଉଣ୍ଡାଳିବାକୁ ହେଲେ, ନିଜର ମଧ୍ୟ ପ୍ରତିଭା ଥିବା ଆବଶ୍ୟକ । ଏମିତିକା କ୍ଲିଷ୍ଟତର ବ୍ୟାପାର ଭିତରକୁ ସାଧାରଣତଃ କେହି ପଶନ୍ତି ନାହିଁ । ମାତ୍ର ଦୀପିକା କେୟାର୍ କରେ । ଅନୌପଚାରିକ ଘୋଷଣାରେ ସେ ହୋଇଥାଏ କଲେଜ୍-କୁଇନ୍ । ଟାଇଟ୍‌ଲ୍‌ଟି ଯେମିତି ତା'ଠାରୁ ଆଉ କେହି ଛଡ଼ାଇ ନ ନିଅନ୍ତି, ସେଥିପାଇଁ ଅବଶ୍ୟ ସେ କିଛି କରିପାରି ନଥାନ୍ତା, ହେଲେ ନିଘା ରଖିଥାଏ ।

ବହୁ ସଂଖ୍ୟକ ବନ୍ଧୁ, ସହଚରୀ ଜିଗର କଲେ । ତା' ନିଜ ସାନ ଭାଇ ଲୁନା ବି — ସିଏ ସେତେବେଳକୁ ସେଇ କଲେଜର ଛାତ୍ର । ତଥାପି ବୋଉକୁ ପଚାରିଲା । ସାଙ୍ଗସାଥୀ ଦଳଦଳ ହୋଇ ଘରକୁ ଆସୁଥା'ନ୍ତି । ବୋଉ କହୁଥାଏ — ସେଥିରୁ କ'ଣ ମିଳିବ ? ଝିଅ ଜନମ ଚୁଲିଶାଳକୁ, ଦୁହିତା ଦି' କୁଳକୁ ହିତା ନହେଲେ ଦି'କୁଳ ପିତା — ଏମିତି ଗଣ୍ଡାକେତେ ଜ୍ଞାତ ଢଗ ଶୁଣାଇ ବହୁତ ବଡ଼ବଡ଼ ପିଟିସନ୍ ନ ପଢ଼ି ବି ବୋଉ ଡିସ୍‌ମିସ୍ କରିଦେଲା । ସିଏ ଆଉ ଲୁନା କେତେ ବୁଝାଇଲେ ବୋଉକୁ — ପପୁଲାରିଟି ଯଦି ଅଛି, ଏନ୍‌କ୍ୟାସ୍ ନ କରାଯିବ କାହିଁକି ? ଅଟଳ ମହାମେରୁ ବୋଉ ଉପରେ ସେ ରାଗି ଯାଇଥିଲା । କୋଉଠୁ ଶୁଣି ବାପା ହଁ ନ ମାରିଥିଲେ ଦୀପିକା ହୁଏତ କଲେଜ ୟୁନିଅନ ନିର୍ବାଚନରେ ଲଢ଼ିପାରି ନ ଥା'ନ୍ତା । ପ୍ରେସିଡେଣ୍ଟ ହେବା ତ ଦୂରର କଥା ।

ପୂରନ୍ତା ନାରୀ, ରୂପବତୀ, ଅତ୍ୟନ୍ତ ରୂପବତୀ ଏବଂ ସେମାନଙ୍କ ସହିତ ଯଦି ପ୍ରତିଭା ମିଶି ଥିବା ପରି ଜଣାପଡ଼େ, ସମସ୍ତେ କାହିଁକି କେଜାଣି ଗୋଟିଗୋଟିକିଆ ବହୁ ବଳୟରେ ବିଭକ୍ତ ହୋଇ ଯାଆନ୍ତି । ସମାନ ଭାବରେ, ଶିଆଳ ଛଞ୍ଚାଣ ଗୁଡ଼ାକ ଅନୃତ-ଯୁଦ୍ଧ-ସନ୍ଧି, ଯୋଉ ବାଗରେ ହେଉପଛେ, ସେମିତି ହିଁ ଭାଗଭାଗ ହୋଇଯାଆନ୍ତି । ବୀରମାନେ ବସୁନ୍ଧରାମାନଙ୍କୁ ଭୋଗ କରନ୍ତି । ଅପେକ୍ଷାକୃତ ଛୋଟଛୋଟ ବୀର ବାଣ୍ଟିକୁଣ୍ଟି ହୋଇ ନର୍ଦ୍ଦମା, ସଫେଇ, ନାଳ ସ୍ତରକୁ ଖସିଆସନ୍ତି ଭୋଗ କରିବାର ଅସଲ ପ୍ରବୃତ୍ତି ସହ । ପୁରୁଷ ଭାବେ — ଏହା ହିଁ ନାରୀର ମାୟାବିନୀ ରୂପ । ଅନ୍ୟଥା, ସିଏ ବି ଚବିଶ କ୍ୟାରେଟ୍ । ନାରୀ ଭାବେ — କ୍ଷମତାର ମୋହ । ନ ହେଲେ ଅନ୍ୟଥା, ସିଏ ବି ଚବିଶ କ୍ୟାରେଟ୍ । ଉଦ୍ୟମ କରି କ୍ଷମତା ଓ ମାୟା ବଳୟ ଯୋଡ଼ି ହୋଇଯା'ନ୍ତି କାହିଁକି ? ହତାଶ ହେବାପର୍ଯ୍ୟନ୍ତ ଉଭୟଙ୍କୁ ଉତ୍ତର ଜଣା ନଥାଏ । ଅଥଚ କେହି ସାହସ କରି ନିଜ ଉଦ୍ୟମ ବା ଅନୁଗମନକୁ ପ୍ରେମ ବୋଲି କହନ୍ତି ନାହିଁ । ଆଶ୍ଚର୍ଯ୍ୟ କଥା, ପ୍ରେମପାଇଁ ମାପର ଡର; ପାପ ପାଇଁ ପୃଥ୍ୱୀ ମୁକୁଳା !

କେବେ ବି ଦୀପିକା ଦାସ କଲେଜରେ ପଢୁଥିବା ଆଉ ସାତ ଆଠ ଶହ ଝିଅଙ୍କ ପରି ଜଣେ ନଥିଲା । ଏବେ କଥା ଆହୁରି ବଦଳିଗଲା । ଅଭିଜ୍ଞତାରେ ସେ ଅଜ୍ଞେୟ, ବୈଭବରେ ବିରୂପାକ୍ଷ, ବର୍ଣ୍ଣରେ ବର୍ଣ୍ଣାଳୀ, ଏମିତି କେତେ କଥା । ନିଜେ କେନ୍ଦ୍ର ବିନ୍ଦୁରେ ପରିଣତ ହେବାପରି ବ୍ୟକ୍ତିତ୍ୱ । ଏଣିକି ଅନ୍ୟମାନେ ତା' ଚାରିପଟେ ଘୂରୁଥିଲେ, ଘୂରିବାକୁ ଇଚ୍ଛା କରୁଥିଲେ ବା ବାଧ୍ୟ ହେଉଥିଲେ । କେହି କେହି ଈର୍ଷା କରୁଥିଲେ ଅବଶ୍ୟ । ସେ ଖାତିରି କରୁ ନ ଥିଲା । ପରେ ପରେ ସେ ଭାବିବାକୁ ଆରମ୍ଭ କଲା ଯେ ତା'ର ସବୁଠୁଁ ବଡ ସମ୍ପତ୍ତି ହେଉଛି — ନିରୀହପଣ ।

ଅମୁକ୍ ଦଳ, ତମୁକ୍ ପାର୍ଟି ତା' ସାହାଯ୍ୟ ଖୋଜିଲେ । ଚରମାନେ କ୍ୟାମ୍ପସ୍ ଖୋଜନ୍ତି । ବ୍ୟାଧର ଜାଲ ଏବଂ ହରିଣୀର ସତର୍କତା । ସଠିକ୍ ହିସାବ ଯଦି ଥାଆନ୍ତା ପ୍ରବୃତ୍ତି ବା କୁଳରୁ ଗୋଟାଏ କ'ଣ ଲୋପ ପାଇସାରନ୍ତାଣି । ମାତ୍ର ଉଭୟ ଅଛନ୍ତି । ନାନାଦି ଢଙ୍ଗରେ । ଦୀପିକା ଜାଣିଥାଏ ।

ପ୍ରୀତିପ୍ରତିମ ରାୟ । କେନ୍ଦ୍ରରେ ମନ୍ତ୍ରୀ ଥିଲେ । ରାଜ୍ୟରେ ଦୁଇ ଥର ମୁଖ୍ୟମନ୍ତ୍ରୀ । ନିର୍ବାଚନର ଅବ୍ୟବହିତ ପୂର୍ବରୁ ଖୋଦ୍ ତାଙ୍କଠାରୁ ଖବର ଆସିଲା । ଦୀପିକା ଏଡ଼ାଇ ଦେଲା । ବିଶିଷ୍ଟମାନଙ୍କଦ୍ୱାରା ଲୋଡ଼ା ହେଉଥିବା ବ୍ୟକ୍ତିର ଗୋଟିଏ ପ୍ରକାର ଅପରିମେୟ ଦମ୍ଭ ଆସେ । ତାହା ହିଁ ତାକୁ ବଲୁଆ କରିଦେଲା । ନାଇଁ ସେ ଯିବନି । ସାଙ୍ଗସାଥୀଙ୍କ ଭିତରୁ କେତେକ କହିଲେ, 'ଚାନ୍ସ ଛାଡ଼ିଦେଲୁ' । ଆଉ କିଏ କହିଲା, 'ଦୀପିକା ଇଜ୍ ୟୁନିକ୍' । ସେ ପ୍ରଶଂସାରେ ଉଞ୍ଚା ହେବାକୁ ଇଚ୍ଛା କଲାନି ବା ହତାଶାରେ ଭାଙ୍ଗି ପଡ଼ିଲାନି । ସେ ଗୋଟିଏ କଥା ପ୍ରାୟ ଭୁଲି ଯାଇଥିଲା । ଗୋଷ୍ଠୀ ଭିତରେ ନେତା ହେଲେ, ବ୍ୟକ୍ତିର କିଛି ଉତ୍ସର୍ଗ ଦରକାର ।

ପ୍ରୀତିପ୍ରତିମ ବାବୁ କେଉଁ ଉପର ସ୍ତରର ବ୍ୟକ୍ତି । ବୟସ ସତୁରି ଟପିବଣି । ତାଙ୍କୁ ଅକାରଣରେ ସନ୍ଦେହ କରିବା ମୋର ଭୁଲ ହେଲା ।

କଲେଜର ଆଗାମୀ ନିର୍ବାଚନ । କାହାରି ନା କାହାରି ସାହାଯ୍ୟ ନିଶ୍ଚୟ ଦରକାର । ଏତିକିବେଳେ ପ୍ରୀତିପ୍ରତିମ ବାବୁଙ୍କଠୁଁ ଆଉ ଥରେ ଡାକରା ଆସିଲା । ଏଥର ହାତ ଲେଖା ଦୁଇଧାଡ଼ିଆ ଚିଠି ଜରିଆରେ । ଗାଡ଼ି ବି ପଠାଇଥା'ନ୍ତି ସେ । ଭାଇସ୍ ପ୍ରେସିଡେଣ୍ଟ୍, ଜେନେରାଲ ସେକ୍ରେଟାରୀ, କଲଚରାଲ୍ ସେକ୍ରେଟାରୀଙ୍କ ସାଙ୍ଗରେ ମିଶି ସେ ସର୍କିଟ ହାଉସ୍ ଗଲା । ଦୁଇଟି ପୁଅ, ଦୁଇଟି ଝିଅ । ନିୟତି ପଣ୍ଡା, କଲ୍‌ଚରାଲ୍ ସେକ୍ରେଟାରୀ । ଡବଡବିଟାଏ ହେଉ ପଛେ କଲେଜ ଫଙ୍କସନ୍ ତୁଲେଇ ନିଏ । ଗେଷ୍ଟ୍ ଯୋଗାଡ଼ କରିବା ବ୍ୟାପାରରେ କୁହାଯାଇପାରେ, ତା'ର ତୁଳନା ନାହିଁ । ବାଟ ସାରା ନିୟତି କହିଚାଲିଥାଏ, ''ସାର୍‌ଙ୍କୁ କହବେ - ଏଥର ଫାଉଣ୍ଡେସନ୍ ଡେ' ରେ ସେ ଚିଫ୍ ଗେଷ୍ଟ ହୋଇଆସନ୍ତୁ । ଆଉ ମାସଟେ ପରେ ନିର୍ବାଚନ । ଜମି ଯିବ । ଆମ ପ୍ୟାନେଲ ଜିତିବା ଏକଦମ ସହଜ ହୋଇଯିବ । ତୋତେ ସାର୍ ଭଲ ପାଆନ୍ତି, ଖୁବ୍ ଜାଣନ୍ତି ବୋଧେ । ତୁ କହିବୁ ।''

ଭଲ ପାଆନ୍ତି ? ତା ଛାତି ଭିତରେ କିଏ ଛୁରିଟାଏ ଖେଞ୍ଚି ନ ଦେଲା କି ଆଉ ।

ଯେତେ ନିଚୋଳ ହେଲେ ବି କଳଙ୍କ ନ ଥିଲେ ଜହ୍ନକୁ ସୁନ୍ଦର ବୋଲି କହିବା ଆମମାନଙ୍କ ଭାବୁକ ମନ ଯେମିତି ଶିଖି ନାହିଁ, ସେମିତି ଟିକିଏ ଦୁର୍ନାମ ପ୍ରଚାର ନ ହେଲେ ଝିଅଗୁଡ଼ାକ ବି ମନଲୋଭା ଲାଗନ୍ତି ନାହିଁ ! ସୁନ୍ଦରୀ ହେଲେ ସ୍କାଣ୍ଡାଲ, ସ୍କାଣ୍ଡାଲ୍ ହେଲେ ସୁନ୍ଦରୀ — ଏହି ଦୁଷ୍ଟଚକ୍ରର ଶିକାର ହୋଇଛି ସେ ବାରମ୍ବାର । ହଁ, ଲୋକଙ୍କ ଧାରଣାକୁ ସେ ଖାତିରି କରିନି । କିନ୍ତୁ ତା'ମାନେ ନୁହେଁ, ଆବଶ୍ୟକ ସମାଜ ତା' ବିରୁଦ୍ଧରେ ଚୁପ୍‌ଚାପ୍ ହୁଏନି । ଘନିଷ୍ଠମାନେ ନିଶ୍ଚୟ ବିବ୍ରତ ହୁଅନ୍ତି । ବୋଉ ଖାଲି ବାପାଙ୍କୁ ଦୋଷ ଦିଏ ; ଅପାର ଉଦାହରଣ ଦିଏ ।

ସର୍କିଟ ହାଉସ୍‌ରେ ଖୁବ୍ ଗହଳି । ଯୋଗ ଭଲ, ଦୀପିକା ପାଖରେ ସାର୍‌ଙ୍କ ଚିଠି ଖଣ୍ଡିକ ଥିଲା । ପୁଲିସ୍ ଛାଡ଼ିଦେଲା । ଅନେକ ଲୋକ ଧାଁ ଦଉଡ଼ କରୁଥିଲେ, ପ୍ରାଇଭେଟ୍ ସେକ୍ରେଟାରୀ ମଧ୍ୟ । ମାତ୍ର ସେ ବାରିହୋଇପଡୁଥିଲେ । କାରଣ ପତିତପାବନଙ୍କ ପରି ସେ ସମସ୍ତଙ୍କଠାରୁ ଦଣ୍ଡବତ ପାଉଥିଲେ । ଦେଖୁଦେଖୁ ସେ ଦୀପିକାକୁ ଚିହ୍ନିଗଲେ । ଅନ୍ୟ ତିନି ଜଣଙ୍କ ଉପସ୍ଥିତି ହେୟ ହୋଇ ପଡ଼ିଲା । ଦୀପିକା ଭାବୁଥିଲା, ପ୍ରେସିଡେଣ୍ଟ୍‌ଭାବେ ତା'ର ଗୁରୁତ୍ୱ ସ୍ୱାଭାବିକ । ସାଙ୍ଗମାନେ ଭାବୁଥିଲେ ଅଲଗା ପ୍ରକାର ।

ପି.ଏସ୍. ଭିତରୁ ଫେରି କହିଲେ, "ସାର୍ ଦହୁତ ବିଜି । ଆପଣଙ୍କୁ ଖୋଜୁଛନ୍ତି । କିନ୍ତୁ ଏଗାରଟା ଆଗରୁ ଦେଖା ହେବନି" । ସେ ଚାରି ଜଣଙ୍କପାଇଁ ଆତିଥ୍ୟର ଯତ୍ପରୋନାସ୍ତି ବ୍ୟବସ୍ଥା କରିଦେଲେ । ସେତେବେଳକୁ ସନ୍ଧ୍ୟା ସାତଟା । ଦୀପିକା ଓ ସାଙ୍ଗମାନେ ଗୋଟିଏ ରୁମ୍‌ରେ ବସିଥା'ନ୍ତି । ଭିଡ଼ ଭିତରେ ଚାରି ଜଣ, ଏବଂ ଚାରିଜଣଙ୍କ ଭିତରେ ଦୀପିକା ଖୁବ୍ ନିଃସଙ୍ଗ ବୋଧକରୁଥାଏ । ସବୁ ବ୍ୟସ୍ତତା ସତ୍ତ୍ୱେ ପି.ଏସ୍. ମଝିରେ ମଝିରେ ରୁମ୍‌କୁ ଆସୁଥା'ନ୍ତି । ଅଜାଣତରେ ଜଳାଇ ମାରିବା ଆଗରୁ ଜଉ ଘରେ ଅତିଥିଙ୍କ ଯତ୍ନ ପରି ତାହା ତାକୁ ଲାଗୁଥାଏ । ସାଙ୍ଗମାନେ ଗପ ହେଉଥା'ନ୍ତି, ହସୁଥାନ୍ତି । ଗ୍ଲାନିକୁ ହଜାଇବାପରି ବାହାନା ସହ ବ୍ୟକ୍ତିଗତ ହତାଶାରେ । ବାରମ୍ବାର ଗୋଟିଏ ବିଷୟ ଆଲୋଚନାକୁ ଆସିଯାଉଥାଏ । "ସାର୍‌ଙ୍କୁ କହିବା, ସେ ଯେମିତି ଚିଫ୍‌ଗେଷ୍ଟ୍ ହୁଅନ୍ତି ।" ନିୟତି କରଛଡ଼ା ଦେଇ ଆଉଜି ପଡୁଥାଏ ଦୀପିକା ଉପରେ । "ଦୀପିକା କହିବ, ସାର୍ ତା' କଥା ଭାଙ୍ଗିବେନି ।"

ଘଟଣାଟା କେମିତି କେମିତି ଭିନ୍ନ ମୋଡ଼ ନେଉଛି । ସେ ପ୍ରତିରକ୍ଷା ଯୋଗାଡ଼ କରି ପାରୁନି । ଆହତ ହେଉଥାଏ ନୀରବରେ । ସୁନ୍ଦର ମୁହଁଟିରେ ମଳା ଶୁଖିଲା ହସ ।

"ଆପଣମାନେ ଡିନର୍ କରନ୍ତୁ । ସାର୍ କହିଲେ, ସିଏ ଦୀପିକା ମ୍ୟାଡାମ୍‌ଙ୍କୁ ଟିକେ ଏକା ଭେଟିବେ ।" ପି.ଏସ୍.ଙ୍କର ଏଇ ଘୋଷଣା ସହିତ ଅନ୍ୟ ତିନି ଜଣ

ଚଟ୍‌କରି କହିଦେଲେ, ''ଦୀପିକା ତୁ ଏନିଉଏ ସାର୍‌ଙ୍କ କନ୍‌ସେଣ୍ଟ୍ ନେବୁ '' ରୁମ୍ ଭିତରେ ଯେମିତି ଖଣ୍ଡିଆଭୂତ ଘୂରିଲା । କାହା ମନକୁ କ'ଣ ଛୁଉଁଛି ତା'ର ଠିକଣା ରହିଲା ନାହିଁ ।

ଗେଟ୍‌ରେ ପୁଲିସ୍‌କୁ ଛାଡ଼ିଦେଲେ, ସମୁଦାୟ ସର୍କିଟ ହାଉସ୍ ଅଞ୍ଚଳ ଫାଙ୍କା ।

ପି.ଏସ୍. ଦୀପିକାକୁ ଡାକିନେଲେ । ଦୀପିକା ସବୁ ଠାକୁରଠାକୁରାଣୀଙ୍କ ନାଁ ମନେ ପକାଉଥାଏ । ତା' ଛାତିକୁ କିଏ କୋଡ଼ିରେ ତାଡୁଛି ଯେମିତି । ତାକୁ ଘର ଭିତରେ ଛାଡ଼ି ସେକ୍ରେଟାରୀ କହିଲେ, ''ସାର୍, ମୁଁ ବାହାରେ ଅଛି ।''

ଦୀପିକା ସାର୍‌ଙ୍କ ପାଦ ଛୁଇଁ ନମସ୍କାର କଲା । ଏତେ ପାଖରୁ ଏତେ ବଡ଼ ଲୋକଙ୍କୁ ସେ ଦେଖି ନ ଥିଲା କେବେ । ସାର୍ ମୁଣ୍ଡ ସାଉଁଳେଇ ନେଲେ, ଟିକିଏ ହସିଦେଲେ । ଏମିତି ହିଁ ସମସ୍ତେ କରନ୍ତିନି କି ? 'ଛି, ଅସୁରଗୁଡ଼ାକ ଠାକୁର ପରି କେତେ ପବିତ୍ର ଦେଖେଇ ନ ହେଉଛନ୍ତି ଟି !''

''ମୁଁ ଟିକେ ବାଥ୍‌ରୁମ୍‌ରୁ ଆସେ । କଥା ହେବା ।''

ସଂବିଦିତ ସାହସର ଯେତେ ପ୍ରକାର ଆନୁମାନିକ ସମରସଜ୍ଜା କରାଯାଇପାରେ, ସବୁ ସେ କଲା । ତଥାପି ସମୁଦ୍ର ମଝିରୁ ଦିଗ୍‌ବଳୟ ତାକୁ ଦେଖାଗଲା ନାହିଁ ।

''ତୁମେ କୁଆଡ଼େ ଖୁବ୍ ପପୁଲାର ?''

ଲାଜରେ ମୁହଁ ପୋତି ପପୁଲାର୍‌ର ଅର୍ଥ ଉଣ୍ଡାଳୁ ଉଣ୍ଡାଳୁ ସେ ଗୋଟାଏ ନିଃଶ୍ୱାସରେ କହିପକାଇଲା, ''ସାର୍, ଆମ କଲେଜ ଫାଉଣ୍ଡେସନ୍ ଡେ'ରେ ଆପଣ ଚିଫ୍ ଗେଷ୍ଟ୍ ହେବେ ।''

''କେବେ ?'' ଦୀପିକା ତାରିଖ କହିଲା ।

ସାର୍ ଡାଏରୀଟା ଓଲଟାଇଲେ । ''ହଁ ମୁଁ କନ୍‌ସେଣ୍ଟ୍ ଦେଲି । ତୁମକୁ ମୋର ଗୋଟିଏ ଅନୁରୋଧ ରଖିବାକୁ ହେବ ।''

କେଉଁ ଲୁହରେ ଏବେ କାନ୍ଦିବ ସେ ? ହଜିଯାଇଥିବା ମନର ମାନଚିତ୍ର ଆଉ ଖୋଜିବାକୁ ଉଦ୍ୟମ ନ କରି ସେ ଆହୁରି ଡରି କରି କହିଲା, ''ସାର୍... ?''

''ଆସନ୍ତା ନିର୍ବାଚନରେ ତୁମେ ଆମ ଦଳରୁ ପ୍ରାର୍ଥୀ ହୁଅ । ନାଇଁ କରିବନି କି ଏ କଥା ଆଉ କାହାରିକୁ ଏବେ କହିବନି । ପ୍ରମିଜ୍ କର ।''

ପୃଥିବୀଟା ଏକଦମ୍ ଓଲଟି ଗଲା । ଦୀପିକା କାନ୍ଦି ପକାଇଲା । ସାର୍ ତା' ପାଖକୁ ଆସି ମୁଣ୍ଡ ସାଉଁଳେଇ ଦେଲେ । ''ଡରନା, ମୁଁ ଅଛି । ଫାଉଣ୍ଡେସନ୍ ଡେ' ଫଙ୍କସନ୍‌ପାଇଁ ନିଜ ଇଚ୍ଛାରେ ଖର୍ଚ୍ଚ କରିବ, କିଛି ଟଙ୍କା ନିଅ '' ସେକ୍ରେଟାରୀଙ୍କୁ ଡାକିଲେ । ଶହେଟଙ୍କିଆ ବଣ୍ଡଲଟିଏ ଦେଲେ ସେକ୍ରେଟାରୀ । ସାର୍ ତାଙ୍କୁ କହିଲେ, ''ତୁମେ ସାଙ୍ଗରେ ଯାଇ ପିଲାମାନଙ୍କୁ ଘରେ ଛାଡ଼ି ଦେଇ ଆସ ।''

ଦୀପିକା ସାଙ୍ଗମାନଙ୍କୁ କହି ପାରିଲାନି, ଦଶ ହଜାର ଟଙ୍କା ଆଣିଛି ବୋଲି । କେମିତି କହିବ ବା କେଉଁ କୈଫିୟତ୍ ସହ ? ଅଳ୍ପ ଆଲୁଅରେ ବି ସିଏ ଅନ୍ୟମାନଙ୍କ ସନ୍ଦେହୀ ଆଖିର ପରସ୍ପର ସଂଚାରିତ ଭାଷା ପଢ଼ିପାରୁଥିଲା । ସେମାନଙ୍କ ପରି କାର୍ ସିଟ୍‌ରେ ଲୋଟାକୋଟା ହୋଇଥିବା ତା'ର ଦେଖା-ଅଦେଖା ପରିଧାନରୁ, ବିଶେଷତଃ ନିୟତି ଯେ ଅସଭ୍ୟ ଅନୁସନ୍ଧାନ ପାଇଁ ପାଖରେ ବସି ନିଜର ପଞ୍ଚେନ୍ଦ୍ରିୟ ଘୂରୋଉଛି, ତାହା ବି ସେ ଅନୁମାନ କରିପାରୁଥାଏ । ସେ ମୁଖସ୍ଥ କରିଥିବା ଶୁଆପରି ବାରମ୍ବାର କହୁଥାଏ, ''ସାର୍ କନ୍‌ସେଣ୍ଟ ଦେଲେ'' । ଇଏ କାର୍‌ରୁ ଓହ୍ଲାଇଲା ବେଳକୁ ପି.ଏସ୍. କହିଲେ, ''ମ୍ୟାଡାମ୍, ମୁଁ ସମସ୍ତଙ୍କୁ ଛାଡ଼ିଦେଇ ଯିବି । ପରେ ଦେଖା ହେବ ।''

ନିୟତି ଅଳ୍ପ ସମୟପାଇଁ ଗାଡିରୁ ଓହ୍ଲାଇ କାନରେ କହିଲା, ''ଦୀପିକା ଲୋ, ତୁ ଚାନ୍ସ ମାରିନେଲୁ ।'' ଗଲାବେଳେ ହସିଲା ସେ । ହସ ନୁହେଁ, ବିଷର ତରଙ୍ଗ । ଯାହା ଖାଲି ଦୀପିକାକୁ ହିଁ ବୁଡ଼େଇ ପାରିବ ।

ଅନିଦ୍ରାରେ ବିଛଣାରେ ଗଡ଼ିଗଡ଼ି ସେ ମନର ଶୂନ୍ୟମଣ୍ଡଳର ଗୋଟିଏ ତାରାକୁ ଯେମିତି ଅନେଇଥାଏ । 'ସୀତାଅପା ବୋକୀ ନା ଚାଲାଖ ? ମୁଁ ଦୀପିକା ନା ଦ୍ରୌପଦୀ ?'



# ଅରଣ୍ୟେ ଅଜଗର

"ଇଲୋ ହେନୀ ନାନୀ, ତୁ ବାର୍ଦ୍ଧକ୍ୟ ଭତ୍ତା ନବୁ ?"

ବୁଢ଼ୀ ଠିଆ ହୋଇଗଲା । ପାହାଡ଼ ଶିଖ ଉପରୁ ଗଡ଼ିଆସୁଥିବା ଆବଡ଼ା ଖାବଡ଼ା ଶିଳା ଖଣ୍ଡକ କ୍ରମନିମ୍ନ ମଝିଟାରେ ଯେମିତି ଅଟକିଗଲା । ବୁଦାଟିଏ ବି ଅଥଚ ହଲେଇଲା ନାହିଁ । କହିଲା, "ତୁ ସରପଞ୍ଚ ହେଲାଦିନୁଁ ଏମିତି କ'ଣ ଇଂଲିଶ କହୁଚୁ କିରେ, ହରିଆ । ଆମ ବୋଲି ଏକଦ୍ବାର ଛାଡ଼ିଦେଲୁଣି । କାହାକୁ ନେବି ?"

ସରପଞ୍ଚବାବୁ ଜାଣନ୍ତି, ହେନୀ ବୁଢୀ କିଏ । ମଣିଷ ନାମକ ମହାସାଗରରୁ ସେ ବିଚ୍ଛିନ୍ନ ଜଳର ଜୟଦ୍ରଥଟିଏ । ଗଣ୍ଡୁଷରେ ଜାଗା ଧରିଛି ସିନା, ତଥାପି ମରି ନାହିଁ । ସମସ୍ତେ ଉଦୟ ପରେ ଅସ୍ତ ହୁଅନ୍ତି, ମାତ୍ର ହେନୀନାନୀର ଜୀବନାକାଶରେ ସୂର୍ଯ୍ୟ ଇଁ କେବେ ଉଠି ନଥିଲା । ଅଥଚ ସେହିପରି ଏକ ନାଁରେ ପୋଡ଼ିହୋଇଯାଉଥିବା ପାଉଁଶର ପିତୁଳାକୁ ସମସ୍ତେ ଡାକନ୍ତି ହେନୀନାନୀ । ପୂଜା ଆବାହନରେ ଗ୍ରାମଦେବତୀଙ୍କ ନାଁର ଆବଶ୍ୟକତା ପରି ହେନୀ ନାନୀ ପ୍ରାୟ ସବୁ ଘରେ ଦରକାର ବେଳେ ଏକମାତ୍ର ଅପରିହାର୍ଯ୍ୟ ବ୍ୟକ୍ତିତ୍ୱ । ପ୍ରତୀକ୍ଷା କ'ଣ ସେ ଜାଣେ ନାହିଁ । ତା' ଜୀବନ ଖୋଦ୍ ପ୍ରତିସାରୀ ।

ବାର୍ଦ୍ଧକ୍ୟ ଭତ୍ତା କ'ଣ, ସରକାର ତାହା କାହିଁକି-କାହାକୁ ଦିଅନ୍ତି, ସେଇ ଭତ୍ତା କିପରି ମିଳେ ଏଇ ସବୁକଥା ସରପଞ୍ଚବାବୁ ହେନୀନାନୀକୁ ବୁଝାଇଲେ । ସେ ସବୁ ବୁଝିଯାଉଥାଏ, ହେଲେ ବାରମ୍ବାର ପ୍ରଶ୍ନ କରୁଥାଏ, "ସରକାର କିଏ କିରେ ହରିଆ ?"

ଯେଉଁ ବୟସରେ ପିଲାଟିଏ କାନ୍ଦିବାକୁ ଅଭ୍ୟାସ ବୋଲି ଭାବିଥାଏ ଏବଂ ହସୁଥିଲେ ମଧ ତା'ର ଅର୍ଥ ଜାଣି ନଥାଏ, ସେହିପରି ବୟସ ଚାରି ପୂରି ପାଞ୍ଚ ପଶିଲାବେଳକୁ ହେନୀନାନୀ ବାହା ହୋଇଥିଲା । ବସ୍ତାନି ଧରି ଚାଟଶାଳୀ ଯାଉଥିଲା ଓ ବଉଳକୋଳି, ଜାମୁକୋଳି ବାଣ୍ଟିବାଣ୍ଟିକା ସାଥୀମାନଙ୍କୁ କହୁଥିଲା, 'ମୁଁ ବାହା ହେଇଚି' । ଅଳ୍ପଦିନ ବ୍ୟବଧାନରେ ତା' ମୁଣ୍ଡରୁ ସିନ୍ଦୁର ଲିଭାଇ ଦିଆଯାଇଥିଲା, କାଚ ଭାଙ୍ଗି ଦିଆଗଲା । କୁନିକୁନି କାଚଗୁଡ଼ିକୁ ଖେଳଣା କରିବାପାଇଁ ତାକୁ ଦିଆଯାଉ,

ଏହିପରି ଅଝଟିଆ ଦାବି କରି ସେ ବହୁତ କାନ୍ଦିଥିଲା, ମାତ୍ର ସେଗୁଡ଼ିକ ତାକୁ ମିଳି-ନଥିଲା । ଏଣିକି ଗାଁକୁ କାଚରା ଆସିଲେ ସେ ବି ତା' ପାଖକୁ ଦଉଡ଼ି ଯାଏ । ରଙ୍ଗବେରଙ୍ଗର କୁନିକୁନି କାଚ ଆଡ଼କୁ ଅନେଇ ରହେ । କାଚରା ତା' ଆଡ଼କୁ ଅନାଏନା । ପାଖରେ ଥିବା ଖୁଡ଼ୀ, ନୂଆବୋଉ ସମସ୍ତେ ତାକୁ କହନ୍ତି, 'ଅଲକ୍ଷଣୀଟା, ଅପଦଶୀଟା... ।' ହେନୀ ନାନୀ ଆଉ ଚାଟଶାଳୀ ଯାଇପାରୁ ନ ଥାଏ । ବରକୋଳି, ଜାମୁକୋଳି, ବଉଳକୋଳି ଗୋଟେଇବାକୁ ସେ ବହୁ ସମୟ ପାଉଥିଲା । ସାଙ୍ଗମାନଙ୍କୁ ସେଗୁଡିକ ବାଣ୍ଟୁଥିଲା । ସେଇ ଅବୁଝା ମନରେ ତଥାପି ସେ ହସି ହସି କହୁଥିଲା, 'ମୁଁ ବିଧବା ହୋଇଛି ।'

ତା' ଜୀବନ ଚରିତର ଲେଖକ ମୁଁ ନୁହେଁ । ତଥାପି ହେନୀ ନାନୀ ସତରେ କେତେବେଳେ ବିଧବା ହେଲା, ତାହା ମୁଁ ଜାଣେ ।

ସମବୟସୀମାନେ ଯେବେଠାରୁ ଅକାରଣଟାରେ ନଖରେ ମାଟି ଖୋଳିବାକୁ ଆରମ୍ଭ କଲେ, କ'ଣ କୋଉଠି ଦେଖିଦେଲେ, ସେମାନଙ୍କ ଗଣ୍ଡଦେଶ ଯେତେବେଳେ ନାଲି ପଡ଼ିବାକୁ ଲାଗିଲା, ଗୋପୀନାଥଙ୍କ ବଇଁଶୀ ମୟୂରଚୂଳ-ତ୍ରିଭଙ୍ଗୀଠାଣି ସବୁଠାରୁ ଯେତେବେଳେ ସେମାନଙ୍କୁ ଅଧିକ ସୁନ୍ଦର ଦେଖାଗଲା ବା ଅସଲରେ ଦେଖୁଥିବା ଚିଜଟିକୁ ମନେମନେ ଯେତେବେଳେ ସେମାନେ ନିଜନିଜ ଅଭିଳାଷର ନିଆରା ରୂପରେ କଳ୍ପନା କରିବାକୁ ସମର୍ଥ ହୋଇପାରିଲେ, ସେତିକିବେଳେ ହେନୀ ନାନୀ ଗୃହଯୋଗ୍ୟା ହୋଇଥିଲା । ଶାଶୁଘରକୁ ଆସିଥିଲା । ସେଇ ହେଲା ତା' ଘର, ସ୍ୱର୍ଗ, ସବୁ କିଛି ।

ଶୋଷ ହେଲେ ଯଦି ପାଣି ମିଳୁଥାଏ, ତାହା ଗୋଟିଏ ପ୍ରକାର । ଶୋଷ ହେଲେ ଯଦି ନିଜ ଛେପ ଢୋକିବା ଛଡ଼ା ଆଉ ଅଧିକ ଆଶ୍ୱାସ ନାହିଁ, ତାହା ଆଉ ଗୋଟାଏ ପ୍ରକାର । ମୋର ବିଶ୍ୱାସ, ଏହା ପରେ ହିଁ ହେନୀ ନାନୀକୁ ବିଧବା ହେଲା ପରି ଲାଗିଥିବ । ମନକୁ ନଛୁଉଁଥିବା କେତେ କଥା କ'ଣ 'ପାପ' ଭିତରୁ ଆସିପାରେ କି ? ହେଉପଛେ ଅବଚେତନ ପ୍ରକ୍ରିୟା, ପ୍ରରୋଚନା ବିନା କେତେ ଲୋକ ପୁଣ୍ୟବାନ ହୋଇପାରନ୍ତି ଯେ ?

ଦେଶ କହିଲେ ତାହା ଗୋଟିଏ ପ୍ରଗଣାଠାରୁ ବଡ଼ ବୋଲି ନବୁଝୁଥିବା, ଷଷ୍ଠ ଜର୍ଜଙ୍କ ନାଁ ବଦଳି ବୋଧହୁଏ ସରକାର ହୋଇଛି ପରି ଭାବୁଥିବା ଅତି ନିଅଣ୍ଟ ସାଧାରଣଜ୍ଞାନର ଅଧିକାରିଣୀ, ତା' ଜୀବନରେ ନାନାଦି କ୍ଳେଶ ଭୋଗିଥିବ । ଏକଥା

ଅନୁମାନ କରିହେଉଛି । କାରଣ ସଂସାରଟା ଭାରି ପବିତ୍ର କି ନା ! ଗଙ୍ଗାଜଳ ସିଞ୍ଚି ଶୋଧନ ନକଲେ ଦେବାଳୟର ଗର୍ଭଗୃହରେ ପୂଜା ବି ହୋଇପାରେନା । କିହୋ ବାବୁ, ମନ୍ଦିର ତ ମନ୍ଦିର, ତାହା ପୁଣି ବାରମ୍ବାର ଅପବିତ୍ର ହେଉଥାଏ କିପରି ? ବା, ଯାହା ଅପବିତ୍ର ନୁହେଁ, ଆମେ ତାହାକୁ ପୁନଃପୁନଃ ପବିତ୍ର କରୁ କିଆଁ ?

ତା'ର ମୌରସୀ ସ୍ଥାବର ସଂପତ୍ତି — ଗୁଣ୍ଠେରୁ କମ୍ ଜମି ଉପରେ କୁଡ଼ିଆ ପରି ଛୋଟ ଘରଟିଏ । ହେପାଜତ୍ ବିହୀନ । ଅସ୍ଥାବର ସଂପତ୍ତି — ହେନୀନାନୀର ହୃଦୟ ।

ଆଗେ, ସେ ଥିଲାବାଲାଙ୍କ ଘରେ ଧାନ କୁଟୁଥିଲା । ଗୋଟାଏ ପରେ ଗୋଟାଏ, ଏମିତି ତିନିଟା ହଲର୍ ପଡ଼ିଲା । ତା' ବୃତ୍ତି ବୁଡ଼ିଗଲା । ତା'ପରେ କେବଳ ତାକୁ ପୂଜା-ଧାନ କୁଟିବାକୁ, ବିରି-ମୁଗ ପାଛୁଡ଼ିବା ପାଇଁ ଖୋଜା ପଡ଼ିଲା । ଗୋପୀନାଥଙ୍କ ବେଢ଼ାରେ ଟିଉବ୍‌ଓଏଲ୍ ବସିବା ପରେ ଠାକୁରଙ୍କ ରୋଷଘରକୁ ଯେବେଠାରୁ ସେହି ପାଣି ଗଲା, କେତେକ ପୂଜାଧାନ କୁଟେଇବାକୁ ହଲରକୁ ଚାଲିଲେ । ସେମାନଙ୍କ ଯୁକ୍ତି ସପକ୍ଷରେ ବୌଦ୍ଧିକ ନିଷ୍ଠା ବି ଥିଲା । ଟିଉବ୍ ଓଏଲ୍‌ରେ ଚମଡା ୱାସର୍ । ଗୋପୀନାଥ ଯଦି ସେ ପାଣି 'ପିଇ' ପାରିଲେ ତା'ହେଲେ ହଲର୍‌ରେ ଧାନକୁଟା ହେଲେ ଭୁଲ ରହିଲା କେଉଁଠି ?

ନୂଆ ନୂଆ ପରିବେଶର ସଂଘର୍ଷରେ ମଣିଷ ମନ ଭିତରୁ କଥିତ ପାପବୋଧର ସଂଜ୍ଞା ନିହାତି ଗ୍ଲାନିରହିତ ଭାବେ ଏମିତି ହିଁ ବଦଳୁଥାଏ । ଅନ୍ୟଥା, ପ୍ରଗତି ଆସିଥାନ୍ତା କେମିତି ?

ଧାଇପଣରେ ହେନୀନାନୀ ଥିଲା ସିଦ୍ଧହସ୍ତା । ପ୍ରକୃତିର ବିସ୍ମୟ ଅସରନ୍ତି । ସଜେଇ ଜାଣିଥିଲେ ଫୁଲଗୁଡ଼ିକ ଗଛ ଅପେକ୍ଷା ଟାଙ୍ଗୁଡ଼ିରେ ଆହୁରି ସୁନ୍ଦର, ଲଳିତ, ଲାସ୍ୟମୟ ଦେଖାଯା'ନ୍ତି ! ଶିଶୁ-ସେବା କେବଳ ଥିଲାବାଲାଙ୍କ ଘରେ ହୁଏ ସିନା । ତାହା ମଧ୍ୟ କ୍ରମେ କ୍ରମେ ବନ୍ଦ ହେବାକୁ ଲାଗିଲା । ପାଠୁଆ ସହରୀ ନୂଆ ନୂଆ ବୋହୂମାନେ ନିଜ ଛୁଆଙ୍କୁ ଉହ୍ନେଇରେ ସେକାଯିବା ପରମ୍ପରାକୁ ଡାକ୍ତରଙ୍କ କଥା କହି ନାପସନ୍ଦ କଲେ ଏବଂ ବେବିଅଏଲ୍‌ରେ ଭିଟାମିନ୍ ଥିବା କଥା ଓ ଶିଶୁପାଇଁ ତାହାର ଉପକାରିତାର ଗ୍ୟାରେଣ୍ଟି ସମ୍ପର୍କରେ ଶାଶୂ-ଆଈଶାଶୂମାନଙ୍କୁ ବୁଝାଇଦେଲେ । ଏମିତି ଗୋଟିଏ ପରେ ଗୋଟିଏ ତିରୋଟ ଅବସ୍ଥାକୁ ମୁକାବିଲା କରିବାକୁ ହେନୀ ନାନୀ ପରିକା ଲୋକର ବିକଳ୍ପ ସାମର୍ଥ୍ୟ ନିଶ୍ଚୟ ନ ଥିଲା । ତଥାପି, ଜୟଦ୍ରଥ ସୁଦର୍ଶନକୁ ଠକି ଚାଲିଥିଲା ।

ସବୁ ଧଡ଼ସ ଦେଖି, ଜାଣି, ହସି, ହଜାଇ ଚାଲିଥିବା ହେନୀନାନୀ ସରପଞ୍ଚବାବୁ ଓରଫ୍ ହରିଆର ପ୍ରସ୍ତାବରେ ଜୀବନରେ ପ୍ରଥମଥର ପାଇଁ ଯେମିତି ଆଚମ୍ବିତ ହୋଇପଡ଼ିଲା। ସେ ସତକୁ ସତ ସେମିତିଆ। ଆଲୁରୀଟାଏ। କିନ୍ତୁ ତା' ନାଁରେ ଗୋଟାଏ ଢ଼ଗ ଅଞ୍ଚଳଟା ସାରା ଚାଲେ। ''ଗହଣା ବି' ଥାନ ନିମକାଠି ମୋର/ପିନ୍ଧୁଥିବା ଲୁଗା ସତରସିଆଁ / ଉଆସରେ ଥାତି ଖୁବ ପାଛିଆଏ/କୋଲପଟାଏ ମୁଁ କିଣିବି କିଆଁ ?''

ଏଇ ଢଗ ଯଦି ସତରେ ହେନୀ ନାନୀ ଫାନ୍ଦିଥାଏ, ଜୀବନର କାଳ-ଭଉଁରି ଭିତରେ ଥାଇ ମରମ-ସଙ୍ଗୀତର କେଉଁ ସୁରକୁ ସେ ଗାଇ ନପାରିଛି ବା କେଉଁ ଲିପିକୁ ସେ ଲେଖି ନପାରିଛି, କୁହନ୍ତୁ ତ ?

ହଁ, କାନ ଫୋଡ଼ିଥିବ। ଫୋଡ଼ କାଳେ ବନ୍ଦହୋଇଯିବ ବା ଘା' କାଳେ କିସିରିପି ଯିବ, ସେଥିପାଇଁ ଦୁଇ କଣାରେ ଦୁଇଟି ଟିକି ନିମକାଠି ପୂରାଇଥିବ ମଧ। ପାଦରେ ପାହୁଡ଼, କଟିବନ୍ଧରେ ଗୋଠ, ଗଳାରେ ଚନ୍ଦ୍ରହାର, ହାତରେ ରୁଲି କଙ୍କଣ, କାନରେ ଝୁମୁକା ବା ଆଉରି କେତେ ଚିଜ ପିନ୍ଧିବା ବୟସ କ'ଣ ତା'ର ଆସି ନ ଥିଲା କି ? ଯୋଗ ଆସିଲା ନାହିଁ। ଟିକସ ଡରରେ ସତ ଉଆସକୁ କୁଟୀର କହୁଥିବା ବା ଚୋର ଡରରେ ସୁନାକୁ ଗିଲଟି କହୁଥିବାଲୋକଙ୍କ ଗହଣରେ ରହି ଆମେ ଖୁବ୍ ସହଜରେ ଭାବିପାରୁନୁ ଯେ ହେନୀନାନୀ ନିମକାଠିକୁ ଗହଣା ଓ ଚାଳିଆକୁ ଉଆସ କହି କିଛି ଅଭିସନ୍ଧି ସାଧନ କରୁ ନ ଥିଲା। ସେଥିରେ ତା' ଜୀବନ-ଦର୍ଶନର ଚଟୁଳ ଆଦେଖା ଅଶ୍ରୁ ଥାଇପାରେ ହୁଏତ, ଢମ ମୋଟୁରୁ ନ ଥିଲା। ଅବଶ୍ୟ ଆମମାନଙ୍କ ଯୁଗରେ ଚପଲ ମାଡ଼ ଖାଇଲେ ବି ଗୌରବ ଅର୍ଜନ ପରି ଦେଖେଇ ହେଉଥିବା ଲୋକେ ନାନୀର ଢଗରୁ ଦର୍ଶନ ନ ଉଣ୍ଡାଳିବା ଭଲ।

ଅତି ସହଜରେ ସେ କହିଲା, ''ହରିଆ ରେ, ଟଙ୍କା ମୋର ହବ କ'ଣ ?''

ସରପଞ୍ଚ ପର୍ଯ୍ୟାୟର ଲୋକମାନେ ମଧ ବେଳେ ବେଳେ ମାୟାରହିତ, ସ୍ୱାର୍ଥହୀନ ଭାବେ କାହାକୁ କାହାକୁ ଭଲ ପାଇବା ଯଦି ସମ୍ଭବ ହେଉଥାଏ, ହେନୀ ନାନୀକୁ ସରପଞ୍ଚ ଶ୍ରୀ ହରିହର ଶତପଥୀ ଭଲପାଉଥିଲେ। ସେ ଫୁଲ ବି ଦିନେ ହେନା ନାନୀର ବାଙ୍ଗୁଡ଼ିରେ ଥିଲା ବୋଲି ଅଥବା ଆଉ କିଛି କାରଣଯୋଗୁ ହୋଇଥାଇପାରେ।

ବହୁ ଉପାୟରେ ସରପଞ୍ଚ ବୁଝାଇଲେ । ଏହା ଭିକ୍ଷା ନୁହେଁ । କେହି ଦାତାର ପୁଣ୍ୟ ଅର୍ଜିବେ ନାହିଁ, ତେଣୁ ତୁ ଗ୍ରହିତାର ଅବସାଦ ସହିତ ବଞ୍ଚିବୁ ନାହିଁ ଲୋ । ଦରଖାସ୍ତ ତମସୁକ ନୁହେଁ । ସେଥିପାଇଁ ତୋତେ କିଛି ବନ୍ଧାଛନ୍ଦା ପକେଇବାକୁ ପଡ଼ିବ ନାହିଁ । ପରିଆମା', ନିଶା-ବୋଉ, କେଲୁଣୀ ଏମିତି ଆମରି ଗାଁରୁ ସାତ ଜଣ ପାଉଛନ୍ତି । ''ମୁଁ ଅଛି ହେଲେ କରି ଦେଇଥିବି '' ।

ବୟସରେ ନଇଁଯାଇଥିବା ହେନୀନାନୀ ଓପରକୁ ମୁହଁଟେକି ସରପଞ୍ଚଙ୍କୁ ଅନେଇଲା । କ୍ରୋଧରେ ଆଖିରୁ ଆଶିଷର ଅମୃତ ଝରିବା କେହି ଦେଖିଚ ? ହରିଆକୁ ଚଟକଣିଟେ ମାରିଲା ସିଏ । କୋଉଠି ବାଜିଲା ତାହା ବଡ଼ କଥା ନୁହେଁ । ''ହଇରେ ଅଲକ୍ଷଣା, ମୋରି କତିରେ ଠିଆହୋଇ ଏଡ଼େ କାଳ କଥାଟିଏ ତୁ ତୁଣ୍ଡରେ ଧଇଲୁ ? ତୋ ଧିଅର କୋଉ ଜାଗାରେ ମୋ ହାତ ନ ବାଜିଚି... ତତେ ଘୁଅମୁତରେ ମଣିଷ କରିଥିଲି... ତୁ ଆଜି ବଡ଼ଲୋକ ହୋଇଗଲୁ ! ସେ ଭତ୍ତା-ଫତ୍ତା ସବୁ ଚୁଲିକି ଯାଉ । ଆଉଥରେ ଯଦି ସେକଥା ମୋତେ କହିଥବୁ, ତୋ ଗାଲ ଫଟେଇଦେବି...'' । ହେନୀନାନୀ ଗୋଟାପଣ ଥରୁଥାଏ ।

ସରପଞ୍ଚବାବୁ ଟିକେ ପରେ ଜାଣିପାରିଲେ ଯେ ସେ ଯାହା ଆଦୌ କହି ନାହାନ୍ତି, ହେନୀ ନାନୀ ଅକାରଣଟାରେ ସେମିତି ହିଁ ବୁଝିଗଲା । ସେ କହିଥିଲେ, ଏବେ କ୍ଷମତା ଅଛି, ପରେ ନଥାଇପାରେ ।

କିଛି କଥାବାର୍ତ୍ତା, ଗୋଟିଏ ଛୋଟ ଫଉଜ୍‌ଦାରି । ସରପଞ୍ଚ-ବନାମ୍ ହେନୀ ନାନୀ । କଥା ଚାଲିଲାବେଳେ ପାଣିରେ ମାଛପରି ଚକ୍‌କର କାଟେ । ସମାଜର ସାଧାରଣ ଅଭ୍ୟାସ ଅନୁଯାୟୀ ସାତ୍ତ୍ୱିକତା ବହନ କରିଥିବା କୌଣସି ସୂଚନା ସିଧା ଚାଲି ପାରେନା । ଦୁଇଜଣଯାକ ପରସ୍ପରକୁ ସଠିକ୍ ଭାବେ ବୁଝିବାବେଳକୁ କଥା ବହୁତ ଦୂର ଚାଲିଯାଇଥିଲା । ବୁଝିଲା ପରେ ହେନୀନାନୀ ଭୋ ଭୋ ହୋଇ କାନ୍ଦିଲା । ସରପଞ୍ଚ ବି । ଦୁଇ ଜଣଯାକ ସତେଯେମିତି ଜାବ ପଡ଼ିଯାଇଥା'ନ୍ତି ।

''ହଇରେ ହରିଆ, ତୁ ଦବୁ ।'' ହେନୀନାନୀର ଏପରି ମାନସିକ ସ୍ଖଳିତର କାରଣ ପଛରେ ତର୍କ-ସିଦ୍ଧାନ୍ତାଦିର ଯୁକ୍ତି ଅପେକ୍ଷା ତା' ମନ ବିଶେଷଭାବେ ଅବଶ ହୋଇପଡ଼ିଥିଲା । ଯାହା ହରିଆ କହି ନାହିଁ ତା' ବିଷୟରେ ସେମିତିକା କାଳକଥା କାହିଁକି ସେ ଚିନ୍ତିଲା !

ତା'ପରେ ହେନୀ ନାନୀ ବାର୍ଦ୍ଧକ୍ୟଭତ୍ତା ପାଇଲା ।

ଆଉ ଆଉଙ୍କ ଠାରୁ ହେନୀନାନୀ ନିଆରା ରକମ ଟଙ୍କା ପାଏ। ସମସ୍ତେ କିରାଣିବାବୁଙ୍କୁ ଦଶ ଦଶ ଟଙ୍କା ଦିଅନ୍ତି। ତାକୁ କେହି ମାଗନ୍ତିନାହିଁ ବା ସିଏ ଯାଚି ଦିଏନାହିଁ। ସମସ୍ତେ ସାଙ୍ଗ ହୋଇ ଫେରିଲା ବେଳେ କିଏ ପୁଅ-ବୋହୂଙ୍କ ଗଞ୍ଜଣା କଥାମାନ କହି ଲୁଚେଇ ଦୋକ୍ତା ପତର କିଣୁଥାଏ ତ ଆଉ କିଏ କୋଉ ବୋହୂକୁ ଭଲ ବୋଲି କହି ତା' ଛୁଆଙ୍କପାଇଁ ଖଜା-ଜିଲିପି ଆଣେ। ସମସ୍ତଙ୍କ ଜୀବନର ରମ୍ୟରଚନା ସାଥିରେ ମୌନ-ମିଳନୀ ସାଜି ଗୋଟିଏ ନୀରବ ସ୍ରୋତ ଚାଲିଥାଏ, ଯେଉଁଥିରୁ ଜଣାପଡ଼େ ଚଳନ ତା'ର ଅଛି ଅଥଚ ସ୍ପନ୍ଦନ ନାହିଁ, ରାଗ ଅଛି ଅଥଚ ଅନୁରାଗ ନାହିଁ, ମମତା ଅଛି ଅଥଚ ମାୟା ନାହିଁ। ସବୁ ହସରେ ସେ ହଜିଯାଉଥାଏ। କାହାରି କ୍ରୋଧରେ ସେ ମିଶେ ନାହିଁ। ବୁଢ଼ୀମାନେ ଲୁଚେଇ ଲୁଚେଇ କହନ୍ତି : ଛି ଛି, କିଏ ଅଛି ଯେ ଏତେ ଲୋଭ !

ହେନୀନାନୀ ପରୋକ୍ଷରେ ଶୁଣେ ଓ ପ୍ରତ୍ୟକ୍ଷରେ ହସିଦିଏ। ସେ ଭାବେ ମନଠାରୁ ନିର୍ମଳ ଅଇନା ନାହିଁ ବା! ହସ ଠାରୁ ସୁନ୍ଦର ସନ୍ତକ ନାହିଁ ବା ନୀରବତାରୁ ବଳି ଅଜେୟ ଅନୁଲିପି ଏ ସଂସାରରେ ନାହିଁ।

ଅତୀତର ସମସ୍ତଙ୍କ ପରି, ଏବଂ ଅକଳନ ଭବିତବ୍ୟର ସେଇ ଶେଷ ସତ୍ୟଟିକୁ ପ୍ରମାଣକରି, ଦିନେ ହେନୀନାନୀ ମାତ୍ର ଥରଟିଏପାଇଁ ମରିଗଲା। ହଁ, ମରିଗଲା।

ଯେତିକିଙ୍କୁ ସିଏ ଉହ୍ଲେଇ ନିଆଁରେ ସେକିଥିବ, ସେଇ ସମଷ୍ଟିର ଏକ ଛୋଟ ଅଂଶ ତା' ଦାହ ଓ ଶୁଦ୍ଧକ୍ରିୟା ସବୁ କାର୍ଯ୍ୟ ସଂପନ୍ନ କଲେ। ତା' ଘରଡିଅ ଖଣ୍ଡିକ ଆଇନତଃ ବେୱାରିସ୍ ହୋଇଗଲା। କାଉ ଗୁଡ଼ାକ ସବୁଦିନେ ସେଇ ଚାଳରେ ବସନ୍ତି। କା-କା କରନ୍ତି। ହେନୀ ନାନୀ ନ ଥାଏ। କେତେ ବର୍ଷ ବିତିଗଲା। ହେନୀ ନାନୀର ଜୀବନ ପରି ତା' ଚାଳିଆ ସମସ୍ତଙ୍କ ଅଜାଣତରେ ଭୂଇଁଆଡ଼କୁ ନଇଁ ଆସୁଥାଏ। କ୍ରମେ କ୍ରମେ।

ହରି ଶତପଥୀ ଆଉ ସରପଞ୍ଚ ନଥା'ନ୍ତି। ସେ ପ୍ରସ୍ତାବ ଦେଲେ, ଠାକୁରଙ୍କ ବସନ୍ତ ବଗିଚା ସହିତ ହେନୀ ନାନୀର ଜମି ଖଣ୍ଡକ ମିଶେଇଦେଲେ କିମିତି ହୁଅନ୍ତା ? ଦଳ ମତ ନିର୍ବିଶେଷରେ ସମସ୍ତେ ହଁ ଭରିଲେ। କାରଣ କାହାର ତ କୋଉବାଟେ ଲୋକସାନ ହଉନି ନା।

ଘର ଭଙ୍ଗାହେଲା। ସତକୁ ସତ, ଭିତରେ କିଛି ନାହିଁ। ଭାଡ଼ିଟାଏ। କେଇ ଫଡ଼ା ଘଷି, ପାମ୍ପରା ହୋଇଯାଇଥିବା କାଉଁରିଆ ଦି'ବିଡ଼ା। ସବୁଠାରୁ ମୂଲ୍ୟବାନ ଦ୍ରବ୍ୟ ଥିଲା, ତା' ନେଳି କସ୍ତା ଶାଢ଼ି। ଅନେକ ବର୍ଷରେ ଯାହାକୁ ଗୁଖିଆ ଖାଇ ଯାଇଥିଲେ।

ଭାଡ଼ି ତଳ ଗୋଟାଏ କଣକୁ ମାଠିଆଟାଏ । ମୁହଁରେ ଶଢ଼େଇ ଘୋଡ଼ାହୋଇଛି । ଖାସ୍ ଧ୍ୟାନ ଦେଲା ପରି କିଛି ନ ଥିଲା । ଜଣେ ହାଉଳି ଖାଇଲା ପରି ଚିତ୍କାର କରିଉଠିଲା — ଟଙ୍କା ।

ସମସ୍ତେ ଦେଖିଲେ, ବିଡ଼ାଟିଏ ଲେଖା ଛଣପଟରେ ଗୁଡ଼ାହୋଇ ସବୁ ମାଠିଆ ଭିତରେ ରହିଛି । ଟଙ୍କା ଛଡ଼ା, ଆଉ ଗୋଟିଏ ଛୋଟ ମଇଳା କାଗଜ ମାଠିଆରୁ ବାହାରିଲା । ବୋଧହୁଏ ବହୁ କଷ୍ଟରେ ହେନୀ ନାନୀ ତା' ଅସିଦ୍ଧ ହସ୍ତାକ୍ଷରରେ ଲେଖିଛି, ''ହେ ଗୋପୀନାଥ, ତୋ'ପେଇଁ ସବୁ ଥାଉ ।''

ଜାଣି ହୋଇଗଲା, ଗୋଟିଏ ବିଡ଼ା ଗୋଟିଏ ମାସର ବାର୍ଦ୍ଧକ୍ୟ ଭତ୍ତା ।

ତା' ଜମି ବସନ୍ତ ବଗିଚାରେ ମିଶି ସାରିଥାଏ । ତା'ରି ଟଙ୍କା ଖର୍ଚ୍ଚକରି ସେଇଠି ଦୋଳବେଦୀ ତିଆରି ହେଲା । ପ୍ରତି ବର୍ଷ ଗୋପୀନାଥଙ୍କ ବିମାନ ବସନ୍ତ ପଞ୍ଚମୀ ରାତିରେ ସେଇଠି ବସେ ।

ଏହାପରେ ହରି ଶତପଥୀ ଦୁଇ ଥର ମନ୍ତ୍ରୀ ହୋଇସାରିଲେଣି । ନିଜ ଅଞ୍ଚଳରେ ବହୁ କାର୍ଯ୍ୟ କରନ୍ତି ସେ । ମନ୍ତ୍ରୀ ହେଲେ ସେ ଗାଁକୁ ଖୁବ୍ କମ୍ ଆସନ୍ତି । ଥରେ ପିଲାଏ ତାଙ୍କୁ ଗୋଟିଏ ପ୍ରସ୍ତାବ ଦେଲେ : ବସନ୍ତ ବଗିଚାଟା ଗାଁ ମୁଣ୍ଡରେ । ଦୋଳବେଦୀଟା ହ୍ୱାଇଟ୍ ଷ୍ଟୋନ୍, ମୋଜାଇକ୍‌ରେ କଲେ ଜମିଯାଆନ୍ତାନି ! ମୁରବିମାନେ ସମର୍ଥନ କରୁଥା'ନ୍ତି, ନୂଆ ନୂଆ ନକ୍‌ସା ବତେଉଥା'ନ୍ତି ।

ରାତିର ଅଳ୍ପ ଆଲୁଅ । ହରି ଶତପଥୀଙ୍କ କାନ୍ଦ କେହି ଦେଖିପାରୁ ନ ଥା'ନ୍ତି । ଆତ୍ମ-ସଂବିତ୍ ଯୋଗୁ ସେ ଆଉ କ'ଣ ରାହା ଧରି କାନ୍ଦିଥା'ନ୍ତେ କି ? ସେ କହିଲେ, ''ନାଇଁ-ନାଇଁ, ହେନୀ ନାନୀର ପୁଣ୍ୟରେ କିଛି ପାପ ମିଶାଇବାକୁ ମୋତେ କେହି କହନା । ସେ ଯେମିତି ଥିଲା, ସେମିତି ବି ସୁନ୍ଦର । ଯେମିତି ଅଛି, ସେମିତି ବି ସୁନ୍ଦର । ସେମିତି ରହିଲେ ସେ ସବୁ ଦିନେ ସୁନ୍ଦର ଦେଖାଯିବ'' ।

ବୋଧହୁଏ, କୋହ ସହିତ ଶବ୍ଦର ସଂଘର୍ଷ ହେଲା । ସେ ଆଉ କିଛି ନ କହି ଉଠି ପଳାଇଲେ ଭିତରକୁ ।





ରବି କାନୁନ୍‌ଗୋ । ଜନ୍ମ : ୨୦.୪.୧୯୪୬ । ଓଡ଼ିଆ ପାଠକ ଜଗତରେ ଏକ ସ୍ୱଚ୍ଛ ପରିଚିତ ନାଁ । ଜଣେ ବିଶିଷ୍ଟ ସ୍ତମ୍ଭ ଲେଖକ, ପ୍ରାବନ୍ଧିକ ଏବଂ କଥାକାରଭାବେ ପାଠକମାନେ ତାଙ୍କୁ ଦେଖି ଆସୁଛନ୍ତି ପ୍ରାୟ ପଚିଶବର୍ଷ ଧରି । ତାଙ୍କ ସୃଷ୍ଟିରେ ପୂରାପୂରି ନୂଆ ମୋଡ଼, ନୂଆ ଶୈଳୀ । ଛନ୍ଦ-ଛଡ଼ା ସାଂପ୍ରତିକ ଘଟଣାବଳୀ ତାଙ୍କ ଲେଖନୀରେ ସାହିତ୍ୟର ସ୍ପନ୍ଦନ, ହାସ୍ୟରସର ବେଢ଼ଣ ଏବଂ ମାନବବାଦର ଲଳିତ ସ୍ପର୍ଶ ନେଇ ଜୀବନ୍ତ ହୋଇଉଠେ । ରାଜନୀତି, ଶ୍ରମ ସଂଗଠନ, ଆଇନଜ୍ଞ ଏବଂ ବହୁ ଭ୍ରମଣ ଅଭିଜ୍ଞତାଯୋଗୁ ତାଙ୍କ ନିରୀକ୍ଷଣର ଶୈଳୀ ଏକଦମ୍ ନିଆରା ଜଣାପଡ଼ିଯାଏ ।

'ସୁରେନ୍ଦ୍ର ମହାନ୍ତି କଥା-ସାହିତ୍ୟ ପୁରସ୍କାର', 'ପ୍ରଜାତନ୍ତ୍ର ବିଷୁବ ସମ୍ମାନ' - ଏହିପରି ଅନେକ ସ୍ୱୀକୃତି ସେ ଲାଭ କରି ସାରିଛନ୍ତି ।

ଶ୍ରୀ କାନୁନ୍‌ଗୋ ଭାରତୀୟ ଇସ୍ପାତ ପ୍ରାଧିକରଣ (ସେଲ୍) ରାଉରକେଲା ଇସ୍ପାତ କାରଖାନାର ଜଣେ କର୍ମଚାରୀ ଏବଂ ବର୍ତ୍ତମାନ ରାଉରକେଲାରେ ରହନ୍ତି । ଯୋଗାଯୋଗ : ଏ-୫୭, ସେକ୍ଟର-୩, ରାଉରକେଲା - ୭୬୯୦୦୨, ଜିଲ୍ଲା- ସୁନ୍ଦରଗଡ଼ ।